# ପୃଥିବୀର ଲୋକକଥା

( ଉତ୍ତର ପ୍ରଦେଶ ଆଦିବାସୀ ଲୋକକଥା )

[ ଦ୍ୱିତୀୟ ଖଣ୍ଡ ]

ଶ୍ରୀ ଲକ୍ଷ୍ମୀଧର ମହାନ୍ତି, ବି.ଏସ୍.ସି., ଏଲ୍.ଏଲ୍.ବି.
ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାନ୍ତି, ଏମ୍. ଏ., ବି. ଇଡ୍.

ନୀଳକଣ୍ଠେଶ୍ୱର ଶିକ୍ଷା ପ୍ରକଳ୍ପ

# ପୃଥିବୀର ଲୋକକଥା

( ଉତ୍ତର ପ୍ରଦେଶ ଆଦିବାସୀ ଲୋକକଥା )

ଦ୍ୱିତୀୟ ଭାଗ



ପ୍ରକାଶକ :

ନୀଳକଣ୍ଠେଶ୍ୱର ଶିକ୍ଷା ପ୍ରକଳ୍ପ

ପୋ: ଦଣ୍ଡାଳ, ଜି: ପୁରୀ

ପ୍ରଥମ ପ୍ରକାଶ :

୪-୧୨-୧୯୮୭

ଦ୍ୱିତୀୟ ପ୍ରକାଶ :

ଅକ୍ଷୟ ତୃତୀୟା—୨୦୦୧

ମୁଦ୍ରାକର :

ଜ୍ୟୋତି ପ୍ରିଣ୍ଟର୍ସ

ମାନସିଂହପାଟଣା, କଟକ-୮

ମୂଲ୍ୟ—୧୦-୦୦

# ସୂଚୀପତ୍ର

# ଦୁଇ ଭାଇ ଓ ସେମାନଙ୍କର ଧୂର୍ତ୍ତ ମାଲିକ

( ଭୂଞ୍ଜିଆ ଲୋକ କଥା )

ଅନେକ ଦିନ ତଳେ ଗୋଟିଏ ଗାଁରେ ଦୁଇ ଭାଇ ରହୁଥିଲେ । ବଡ଼ଟି ଚାଲାକ । ଧୂର୍ତ୍ତ । କିନ୍ତୁ ଅଳସୁଆ । କିଛି କାମ କରେ ନାହିଁ । ଖାଲି ବସି ଆରାମ କରେ । ସାନଟି ବୋକା, କିନ୍ତୁ କର୍ମଠ । ଦିନ ସାରା ସେ ଖଟେ । ଘରଯାକର ସବୁ କାମ ସେ ତୁଲାଇ ନିଏ ।

ବଡ଼ଭାଇର ଢଙ୍ଗରଙ୍ଗ ସାନ ମନକୁ ପାଏ ନାହିଁ । ଦିନକୁ ଦିନ ସେ ବିରକ୍ତ ହୋଇ ଉଠେ । ଶେଷକୁ ସେ ସ୍ଥିର କଲା—ଘର ଛାଡ଼ି ଚାଲିଯିବ । ବିଦେଶରେ ରହି ଚାକିରି କରିବ । ଦେଖିବ, ବଡ଼ଭାଇ କେମିତି କାମ ନ କରି ଆରାମ କରିବ ।

ସେ ଆଉ ଡେରି କଲା ନାହିଁ । ଘରୁ ବାହାରି ପଡ଼ିଲା । କେଉଁଠିକୁ ଯିବ, ସେ ଠିକ୍ କରି ଜାଣିନଥାଏ । କିନ୍ତୁ ଚାକିରିଟିଏ କରିବାକୁ ସେ ବ୍ୟାକୁଳ । ବାଟରେ ଯାହାକୁ ଦେଖେ, ସେ ତା ମନ କଥା କହେ । ବାଟରେ ତାର ଜଣେ ଲୋକ ସାଥିରେ ଦେଖାହେଲା । ସେ ବଡ଼ ଧୂର୍ତ୍ତ । ସେ ଖାଲି ଚାକରକୁ ଠକେ ନାହିଁ ଅପଦସ୍ତ କରିବା ତାର ଅଭ୍ୟାସ । ସାନ ଭାଇଠାରୁ ଚାଲାକଙ୍କର ସବୁ କଥା ଆଦାୟ କରିଲା । ତାପରେ ସେ କହିଲା—'ମୋ ପାଖରେ ଚାକର ଅଛି । କିନ୍ତୁ ସର୍ତ୍ତ ଗୋଟିଏ । ମୁଁ ଯାହା କହିବି, ସେଥିରେ ଯଦି ତୁମେ ଅସନ୍ତୁଷ୍ଟ ହେବ, ତାହା ହେଲେ ମୁଁ ତମର ନାକ କାଟି ଦେବି । ଆଉ ମୁଁ ଯଦି ଅସନ୍ତୁଷ୍ଟ ହୁଏ, ତାହା ହେଲେ ମୋର ବି ନାକ କଟା ହେବ ।"

ସାନଭାଇ ତ ଚାକର କରିବାକୁ [illegible] । ଭଲ ମନ୍ଦ ବିଷୟର ବିଚାର କରିନଥିଲା । ସେ ଧୂର୍ତ୍ତ ମାଲିକ କଥାରେ ରାଜି ହୋଇଗଲା । ମାଲିକଟି ତାକୁ ସାଥିରେ ଧରି ତା ଘରକୁ ଗଲା ।

ପରଦିନ ସକାଳ । ମାଲିକ ନୂଆ ଚାକରକୁ କାମ କରିବାକୁ ବିଲକୁ ପଠାଇଲା ବେଳେ କହିଲା—"ତୁ ବିଲକୁ ଯା, ମୁଁ ତୋ ପାଇଁ ଖାଇବା ପଠାଉଛି ।"

ଦୁଇପହରବେଳେ ମାଲିକଟି, ଚାକରର ଖାଇବା ଜିନିଷ ଗୋଟିଏ ପାତ୍ରରେ ରଖି ତାକୁ ଘୋଡ଼ାଇ ଦେଲା । ଗୋଟିଏ ବୋତଲରେ ତା ପାଇଁ ଦୁଧ ରଖିଲା । ବୋତଲକୁ ଠିପିରେ ବନ୍ଦ କଲା । ଗୋଟିଏ ଚାକରାଣୀ ହାତରେ ଖାଇବା ଜିନିଷ ଓ ଦୁଧ ଚାକର ପାଖକୁ ପଠାଇ ଦେଲା । କିନ୍ତୁ ଚାକରାଣୀକୁ ମାଲିକର ନିର୍ଦ୍ଦେଶ—ସେ ଚାକରକୁ କହିବ ଯେ, ଚାକରଟି ଘୋଡ଼ଣୀ ନଖୋଲି ଖାଦ୍ୟ ଖାଇବ ଓ ଠିପି ନ ଖୋଲି ଦୁଧ ପିଇବ ।

ଚାକରାଣୀ ମାଲିକର କଥା ଅନୁସାରେ ଖାଇବା ଜିନିଷ ଓ ଦୁଧ ଚାକର ଆଗରେ ଥୋଇଦେଲା । ମାଲିକ ଯାହା କହିଥିଲା, ତା କହିଲା । ଚାକରଟି କିଛି ବୁଝିପାରିଲା ନାହିଁ । ଘୋଡ଼ଣୀ ନ ଖୋଲି ଖାଦ୍ୟ ଖାଇବା ଆଉ ଠିପି ନ ଖୋଲି ଦୁଧ ପିଇବା ଏକାନ୍ତ ଅସମ୍ଭବ । ତେଣୁ ସେ ଖାଇବା ଜିନିଷ ଓ ଦୁଧ ଚାକରାଣୀ ହାତରେ ଫେରାଇ ଦେଲା ।

ସନ୍ଧ୍ୟାବେଳକୁ ସାନ ଭାଇଟି କାମରୁ ଫେରିଲା । ନଖାଇ ନ ପିଇ ମୁହଁ ତାର ଶୁଖି ଯାଇଥାଏ । ମାଲିକ ତାକୁ ଦେଖି ପଚାରିଲା "ଘୋଡ଼ଣୀ ନ ଖୋଲି ଖାଦ୍ୟ ଖାଇବାକୁ ଓ ଠିପି ନ ଖୋଲି ବୋତଲରୁ ଦୁଧ ପିଇବାକୁ ଖବର ଦେଇଥିଲି । ତୁ ଖାଦ୍ୟ ଖାଇଲୁ ନା ଦୁଧ ପିଇଲୁ । ମୋ କଥାରେ ତୁ ଖୁବ୍ ଖୁବ୍ଧ ହୋଇଛୁ ?"

ସାନ ଭାଇଟି ସରଳ । ଆଗପଛ କିଛି ଭାବିଲା ନାହିଁ । ମାଲିକ କଥାରେ ହଁ ମାରିଦେଲା । ତାପରେ ମାଲିକ କହିଲା—"ଚୁକ୍ତିର ସର୍ତ୍ତ ଅନୁସାରେ ତୋର ନାକ କଟା ହେବ ।" ତାପରେ ଡେରି ନ କରି ସାନ ଭାଇର ନାକ କାଟି ପକାଇଲା ।

ନିଜର ନାକ ନାହିଁ । ମୁହଁଟା ଅସୁନ୍ଦା । ଏପରି ଅବସ୍ଥାରେ ଗାଉଁ ଗାଉଁ ବୁଲି ଚାକିରି ଖୋଜିବା ଅସମ୍ଭବ । ତେଣୁ ସାନ ଭାଇଟି ଘରକୁ ଫେରିଆସିଲା ।

ଘରେ ପହଞ୍ଚି ସବୁ କଥା ବଡ଼ ଭାଇ ଆଗରେ କହିଲା । ଏକଥା ଶୁଣି ବଡ଼ ଭାଇ ନିଆଁ । ପ୍ରତିଶୋଧ ନେବା ପାଇଁ ସେ ପ୍ରସ୍ତୁତ । ଘରୁ ଶୀଘ୍ର ବାହାରି ପଡ଼ିଲା । ଅଳ୍ପ ସମୟ ଭିତରେ ସେ ତାର ସାନ ଭାଇର ମାଲିକ ଘରେ ହାଜର । ମାଲିକକୁ ଚାକିରି ଦେବାକୁ ତାର ଏକାନ୍ତ ଅନୁରୋଧ ।

ମାଲିକଟି ଭାବିଲା—ଚାକରଟି ଆପେ ଆପେ ଜୁଟିଛି । ତା ପାଖେ ଚୁକ୍ତି କରିବାକୁ ଚାକରଟିର ଖାଲି ଇଚ୍ଛା । ତେଣୁ ତାକୁ ସିଧା ମନା କରିବାଟା ବିବେକର କାମ ହେବନାହିଁ । ବରଂ ତାର ତ ସର୍ତ୍ତ ଅଛି । ସେ ଯଦି ସେଥିରେ ରାଜି ହୁଏ, ତାକୁ ସେ ରଖିବା ଉଚିତ ହେବ । ତାପରେ ସେ ତାର ସର୍ତ୍ତ କଥା ବଡ଼ ଭାଇକୁ କହିଲା ।

ବଡ଼ ଭାଇ ସବୁ ତ ଜାଣିଶୁଣି ଆସିଛି । କେବଳ ହେବାର ତାର ପ୍ରଶ୍ନ ଉଠୁନାହିଁ । ତେଣୁ ସେ ସମ୍ମତି ଜଣାଇ ଦେଲା । ଏଥିରେ ମାଲିକଟି ଭାରି ଖୁସି ।

ପରଦିନ ସକାଳ । ମାଲିକର ଆଦେଶରେ ବଡ଼ ଭାଇ ହଳକୁ ଗଲା । କାନ୍ଧରେ ତାର ଲଙ୍ଗଳ । ଆଗେ ଆଗେ ବଳଦ । ବିଲଟିରେ

ପହଞ୍ଚି ହଳ ଯୋଚ ଦେଲା । କିନ୍ତୁ ସମସ୍ତ ଘରେ ବୁଢ଼ୀରାଣୀ ସେଠି ପହଞ୍ଚି କହିଲା "ତମ ପାଇଁ ଖାଇବା କନ୍ଦ ଘୋଡ଼ାଣୀ ଥିବା ପାତ୍ରରେ ଆଉ ଘିଅ ଠିପି ଦିଆ ବୋତଲରେ ଅଣିଛି । ତୁମେ ଘୋଡ଼ାଣୀ ନ ଖୋଲି ଖାଦ୍ୟ ଓ ଠିପି ନଖୋଲି ଘିଅ ପିଇବ । ଏହା ମାଲିକର ଆଦେଶ ।"

ଏସବୁ କଥା ବଡ଼ ଭାଇ ଆଗରୁ ଜାଣିଥିଲା । ତେଣୁ ସେ ବିଚଳିତ ହେଲା ନାହିଁ । ବରଂ ଧୀରସ୍ଥିର ଭାବରେ ବୁଢ଼ୀରାଣୀକୁ ଖାଦ୍ୟ ଓ ଘିଅ ଫେରାଇ ନେବାକୁ ଅନୁରୋଧ କଲା ।

ବେଳ ଅଖିର ହେବାରୁ ସେ ହଳ ଫିଟାଇଲା । ଗୋଟିଏ ବଳଦକୁ ମାରି ମାଂସ କଲା । ହଳକୁ ଭାଙ୍ଗି ଜାଳ କଲା । ତାପରେ ସେଇଠି ତାକୁ ସେ ରାନ୍ଧି ଖାଇଲା । ସେ ଘରକୁ ଫେରୁ ଫେରୁ ରାତି ଅଧ । ମାଲିକଟି ଚେଇଁ କରି ବସିଥାଏ । ମାଲିକ କିଛି କହିବା ପୂର୍ବରୁ ଯୁବକଟି କହିଲା—"ମୁଁ ଯାହା କଲି, ସବୁ ଶୁଣିଥିବ । ମୋ କାମରେ ତୁମେ ସନ୍ତୁଷ୍ଟ ହେଲକି ?"

"ହଁ" ମାରି ମାଲିକଟି ମନେ ମନେ ଭାବିଲା—ଏ ଯୁବକଟି ଅତ୍ୟନ୍ତ ଧୂର୍ତ୍ତ ।"

ପରଦିନ ସକାଳ । ମାଲିକଟି ଯୁବକକୁ ଧରି ବଣକୁ ବାହାରିଲା । ବଣରେ ଯୁବକକୁ ପ୍ରାଣରେ ମାରି ଦେବାକୁ ତାର ମତଲବ । ସେଥିପାଇଁ ଡେରି ତ ହେବ । ତେଣୁ ସାଥିରେ ପୁରି କଟୁରି ଖାଇବାକୁ ଧରି ଥାଏ । ମାଲିକଟି ଚପଲ ପିନ୍ଧି ଘରୁ ବାହାରି ପଡ଼ିଲା । ଘର ସରହଦ ପାରି ନ ହେବା ପୂର୍ବରୁ ତାର ଖିଆଲ ହେଲା—ଚଟି ପିନ୍ଧି ଜଙ୍ଗଲକୁ ଯିବା ଉଚିତ ହେବ ନାହିଁ । ଯୋତା

ସିନ୍ଧ ଗଲେ ଭଲ ହେବ । ତେଣୁ ସେଇଠି ଠିଆ ହୋଇ ଶୂକରକୁ କହିଲା —"ଯା ଘୋଡ଼ା ହଳକ ଘରୁ ନେଇ ଆସିବୁ ।

ଶୂକରଟି ଘରେ ପହଞ୍ଚି ଦେଖିଲା—ମାଲିକର ଦୁଇଟି ସ୍ତ୍ରୀ । ସେଠି ବଦମାସୀ କରିବାକୁ ଆସିଛୁ । ତେଣୁ ଘୋଡ଼ା ନ ମାଗି ସାନ ସ୍ତ୍ରୀକୁ କହିଲା—"ମାଲିକ ତମର ନାକ ମାଗୁଛନ୍ତି, ଦିଅ ।" ନାକ ଦେବ ନାହିଁ ବୋଲି ସ୍ତ୍ରୀଟି ମନା କରିବାରୁ, ଶୂକରଟି ପାଟି କଲା —"ସେ ଉଭୟ ନାହାନ୍ତି ।" ମାଲିକଟି ସିଆଡୁ ପାଟିକଲା—"ତାକୁ ଦେଇଦିଅ ।" ସାନ ସ୍ତ୍ରୀର ଆଉ ଉପାୟ ନଥିଲା । ସ୍ୱାମୀ ତାର ଶୂକରକୁ ନାକ କାଟିବାକୁ ପଠାଇଛନ୍ତି, ଭାବି ମନ ଦୁଃଖ କଲା । ଶୂକରଟି କଟକଣା ଭାବରେ ସାନ ସ୍ତ୍ରୀର ନାକ କାଟି ପକାଇଲା । ତା'ପରେ ବଡ଼ ସ୍ତ୍ରୀ ପାଖକୁ ଯାଇ ନାକ କାଟିବାକୁ ଚାହିଁଲା । ସେ ବି ମନା କଲା । ପୁଣି ଏଥର ପାଟିରେ ମାଲିକକୁ କହିଲା—"ମୁଁ କମା ଖୋଜେ ପାଇଲି ।" ମାଲିକଟି ଭାବିଲା— ଶୂକରକୁ ଯଦି ଘୋଡ଼ା ଦିଆଗଲା । ତେଣୁ ସେଇଠୁ ସେ ବଡ଼ ପାଟିରେ କହିଲା—ତାକୁ ଅନ୍ୟଟି ବି ଦେଇଦିଅ ।" ଶୂକରଟି ହେଳା କଲା ନାହିଁ । ବଡ଼ ସ୍ତ୍ରୀର ନାକଟି ବି କାଟି ପକାଇଲା । ତାପରେ ଘୋଡ଼ା ଧରି ସେ ମାଲିକ ପାଖକୁ ଧାଇଁଲା । ମାଲିକ ଓ ଶୂକର ଜଙ୍ଗଲରୁ ଗଲେ ।

ମାଲିକର ତ ଶିକାର ହୋଇଛି ଆଜ । ତେଣୁ ଡେରି ହେବା ସ୍ୱାଭାବିକ । ଜଙ୍ଗଲରେ ରାତି ହୋଇଗଲା । ରାତିଟା ରହିବା ପାଇଁ ଗୋଟାଏ ପାହାଡ଼ ଶିଖ ଉପରକୁ ଗଲେ । ତା'ପରେ ଶୋଇବାର କଥା । ମାଲିକ ଭାବିଲା—ଶୂକରଟି ପାହାଡ଼ ଧାରରେ ଶୋଇଲେ, ରାତିରେ ସେ ଠେଲି ଦେବ । ଶୂକରଟି ପାହାଡ଼ରୁ ଗଡ଼ ଗଡ଼ ହୋଇ ଅତଳ ଗହ୍ୱରରେ ପଡ଼ିବ, କହିହେବ ନାହିଁ । ତାର କଣା ବି ଯିବ ।

ସେଥିପାଇଁ ସେ କହିଲା—"ମୁଁ ରାତିରେ ଭୟଙ୍କର ସ୍ୱପ୍ନ ଦେଖେ । ଉଠି ବସିପଡ଼େ । ଯାହାଙ୍କ ବାଡରେ ଶୋଇଲେ ମୋର ବିପଦ ଅଛି । ମୁଁ ବାଡରେ ଶୋଇବ ନାହିଁ ।

ଗୃହରକ୍ଷୀ ଜାଣିଶୁଣି ପ୍ରତିବାଦ କଲା ନାହିଁ । ସେ ଯାହାଙ୍କ ବାଡ଼ରେ ଶୋଇବାକୁ ରାଜିହୋଇ ଶୋଇଗଲା । ତା ହାଖକୁ ମାଲିକ । ସେମାନେ ତ ଯାହାଙ୍କ ଜଙ୍ଗଲ ବୁଲି ବୁଲି କ୍ଳାନ୍ତ ହୋଇଥିଲେ । ବିଛଣା ଧରୁଧରୁ ମାଲିକଟି ଶୋଇ ଘୁଙ୍ଗୁଡ଼ି ମାରିଲା । ଏଇ ମଉକାରେ ଗୃହରକ୍ଷୀ ତା ଶୋଇବା ଜାଗାରେ ଟଙ୍କାଥଳିଟିଏ ରଖିଦେଲା । ଗଛରେ ଚଢ଼ିଗଲା । କିନ୍ତୁ ସମସ୍ତ ଘରେ ମାଲିକର ନାକ କାଟିଗଲା । ସେ ସ୍ୱପ୍ନ ଦେଖିବାର ଛଳନା କରି ଗୃହର ବୋଲି ସବୁ ଟଙ୍କାଆକୁ ଠେଲି ଦେଲା । ଗୃହରକ୍ଷୀ ପାଟିକରି କହିଲା—"ମୁଁ ସବୁ ଦେଖୁଛି ।"

ତା'ପର ଦିନ ସକାଳେ ସେମାନେ ମାଲିକର ଘରକୁ ଫେରିଲେ । ନିଜ ସ୍ତ୍ରୀ ଦୁହିଁଙ୍କର ନାକ ନଥିବା ଦେଖି ମାଲିକଟି ନିଆଁ । ତା'ପରେ ସେ ଗୃହରକ୍ଷୀକୁ ପଚାରିଲା—"ଏସବୁ କାଣ୍ଡ କିଏ କଲା ?"

ଗୃହରକ୍ଷୀ ବିନମ୍ର ଭାବରେ କହିଲା—"ଆଜ୍ଞା । ସେମାନଙ୍କ ନାକ ମୁଁ କାଟି ନେଇଛି । ଆପଣ ଏଥିପାଇଁ ବିରକ୍ତ କି ?"

ମାଲିକ ତ ରାଗିଥିଲା । ଏ ପ୍ରଶ୍ନ ଶୁଣି ଆହୁରି ରାଗିଯାଇ କହିଲା—"ଏଥିରେ ପୁଣି ପଚାରିବାର ଅଛି ?"

"ତାହାହେଲେ ମୋତେ ତୁମର ନାକ କାଟିବାକୁ ଦେବ ।" ଏତିକି କହି ମାଲିକର ନାକ ସେ ଶୀଘ୍ର କାଟି ପକାଇଲା ।

ତା'ପରେ ସେ ତାର ଘରକୁ ଫେରିଲା ।

# ବିଲୁଆ ଓ ହରିଣ

( ବୁଲ୍‌ଗା ଲୋକକଥା )

ବିଲୁଆ ଓ ହରିଣ ଘନିଷ୍ଠ ବନ୍ଧୁ । ସାଥି ହୋଇ ବୁଲନ୍ତି । ଖାଇବାବେଳ ହେଲେ, ବିଲୁଆ ଖସିଯାଏ । ହରିଣ ଏ କଥା ବହୁବାର ଦେଖିଛି । କିନ୍ତୁ କହେ ନାହିଁ । ଥରେ ସେ ବିଲୁଆକୁ କହିଲା—"ତୁ କେଉଁଠାକୁ ଖସିକରି ଯାଉଛୁ, ମୁଁ ଜାଣିପାରୁ ନାହିଁ । ଏଥର ମୁଁ ତୋ ସାଥିରେ ଯିବି । ସାଙ୍ଗହୋଇ ଖାଇବା ।"

ବିଲୁଆ ଖୁବ ଚତୁର । ସେ କହିଲା—"ଗୋଟିଏ ଜମିରେ ଗହମ ଗଛ ହୋଇଛି । ଚାଲ, ସେଇଠିକୁ ଖାଇବାକୁ ଯିବା ।"

ପରଦିନ ବିଲୁଆ ଓ ହରିଣ ସାଙ୍ଗ ହୋଇ ବାହାରିଲେ । ବିଲୁଆ ହରିଣକୁ ଗହମ କ୍ଷେତରେ ପହଞ୍ଚାଇ ଦେଲା । ଗହମ କ୍ଷେତଟି ଦେଖି ହରିଣ ଖୁବ ଖୁସି । ବିଲୁଆକୁ ଧନ୍ୟବାଦ ଦେଲା । ଗହମ କ୍ଷେତରେ ପଶି ଖାଇବାରେ ସେ ବ୍ୟସ୍ତ । କୁଆଡ଼କୁ ଅନାଇଁ ନଥାଏ । ସେଇ କ୍ଷେତରେ ଗୋଟିଏ ଫାଶ ବସିଥିଲା । ହରିଣଟି ତାହା ଜାଣି ପାରିଲା ନାହିଁ । ଖାଇ ଖାଇ ଯାଉ ଯାଉ ସେ ଫାଶରେ ପଡ଼ିଗଲା । ଏଥର ହରିଣ ଯାଏ କୁଆଡ଼େ ? ମୁକ୍ତ ହେବାକୁ ସେ ବ୍ୟାକୁଳ । କେତେ ଚେଷ୍ଟା ବହୁତ କଲା । ଟାଣି ଓଟାରା ହେଲା । ମୁକୁଳି ପାରିଲା ନାହିଁ । ବିଲୁଆ ତ ସେଠି ଥିଲା । ତାକୁ କହିଲା—"ଦେଖୁଛୁ ନାଁ, ମୁଁ କେତେ ହଇରାଣ ହେଲଣି । ଦାନ୍ତରେ ଟିକିଏ ଫାଶଟା କାଟି ଦେ । ମୁଁ ମୁକୁଳିଯାଏ ।"

ଢଲୁଆ ମୁଣ୍ଡ ହଲାଇ ନାହିଁ କଲା । ତା'ପରେ କହିଲା— "ଆଜି ମଙ୍ଗଳବାର । ମୋର ଉପାସ । ଚମଡ଼ାର ଫାଶ ହୋଇଛି । ମୁଁ ଆଜି ଚମକୁ ଦାନ୍ତରେ କାଟିବି ନାହିଁ ।"

ଏହା ଭିତରେ କିଛି ସମୟ ଚାଲିଗଲାଣି । ଠାଣି ଓଟାରି ହୋଇ ହରଣଟି ଚାଲିଆ । ସେ ମଲାପରି ପଡ଼ିଥାଏ । ଜଗୁଆଳଟି ଆସି ଦେଖିଲା—ହରିଣ ଫାଶରେ ପଡ଼ି ମରି ଯାଇଛି । ସେ ଫାଶ ଖୋଲି ଦେଇ କଣ୍ଢେଇର ଆଉପଟକୁ ଗଲା । ଏଇ ମଉକାରେ ହରଣଟି ଉଠି ଦୌଡ଼ିଲା । ଜଗୁଆଳ ହରିଣର ପଳାଇବା ଦେଖି ରାଗିଯାଇ ତା'ର ଠେଙ୍ଗିଆକୁ ହରିଣକୁ ଲକ୍ଷ୍ୟକରି ଫିଙ୍ଗିଲା । ହରିଣ ତ ପଳାଇଛି । ଢଲୁଆ ଝାଳ ତାଡ଼ରେ ଲୁଚି ବସିଥିଲା । ଠେଙ୍ଗିଆ ଯାଇ ତା ମୁଣ୍ଡରେ ବାଜିଲା ।

ପିଲାଏ କହିଲେ—

ମଙ୍ଗଳବାର ଢଲୁଆର ଉପାସ
ଦାନ୍ତରେ କାଟିଲା ନାହିଁ ସେ ଫାଶ
ମିଛ କହି ଠକେ ସାଥିକୁ ତାର
ମୁଣ୍ଡେ ବସେ ଠେଙ୍ଗିଆର ପାହାର ।



## ଏକା ତଗାଇଠାକେ କୁଜା ସୁନ୍ଦର

( ବୁକସା ଲୋକକଥା )

ଏକଦା ଦୁଇଟି ବନ୍ଧୁ ଥିଲେ । ଜଣେ କୁଜା । ଆଉ ଜଣକ ଅନ୍ଧ । ସେମାନେ ଗାଁରେ ଚଳିପାରିଲେ ନାହିଁ । ସାଥିହୋଇ ସହରକୁ

ଗଲେ । ଯାହାହେଉ, ତାଙ୍କ ଭାଗ୍ୟ ଭଲ । ସେମାନେ ପୋତା ମାଲ ଜିନିଷ ପାଇଗଲେ । ଏଥର ଦୁହେଁ ଖୁବ ଖୁସି ।

ଦିନେ କୁଜାଟି ବସାରେ ଏକୁଟିଆ ଥାଏ । ଯେଉଁ ଧନ ସେମାନେ ପାଇଥିଲେ, କୁଜା ତାକୁ ଖୋଲିକରି ଦେଖିଲା । ତାର ଲୋଭ ହେଲା ।

ସେ ଜଙ୍ଗଲକୁ ଯାଇ ବିଷାକ୍ତ ସାପଟିଏ ମାରିଲା । ତାକୁ ଆଣି ଗୋଟିଏ ପାତ୍ରରେ ରାନ୍ଧିବାକୁ ଲାଗିଲା । ଅନ୍ଧ ସେଠି ପହଞ୍ଚିଗଲା । ଅନ୍ଧର ଅବିଶ୍ୱାସକୁ ଏଡ଼ାଇବା ପାଇଁ କୁଜାଟି ପାଣି ଆଣିବାକୁ ଗଲା । ଅନ୍ଧଟି ରନ୍ଧାପାତ୍ରର ଢାଙ୍କୁଣୀ ଖୋଲିଦେଲା । ସାପର ବିଷାକ୍ତ ବାମ୍ଫ ବାଜି ଅନ୍ଧର ପରଦା ଖୋଲିଗଲା । ତାର ଆଖି ଭଲ ହୋଇଗଲା । ଏଥର ସେ ସବୁ ପରିଷ୍କାର ଭାବରେ ଦେଖି ପାରୁଛି । ସେ ଦେଖିଲା —କୁଜା ସାପଟିଏ ରାନ୍ଧୁଛି । କୁଜା ଯେ ତାକୁ ମାରିବାର ମତଲବରେ ଅଛି, ଏଥିରେ ତାର ସନ୍ଦେହ ରହିଲା ନାହିଁ ।

ପାଣି ଧରି କୁଜାଟି ଫେରିଲା । ଅନ୍ଧ ତ ସେତେବେଳକୁ ଖୁବ୍ ରାଗିଯାଇଥିଲା । ତା' ପିଠିରୁ ଖୁବ୍ ଜୋରରେ ଗୋଇଠାଏ ପକାଇ କହିଲା—"ତୁ ମୋତେ ମାରିବାକୁ ଚାହୁଁଥିଲୁ ?"

ଗୋଇଠାଟି ଖାଇ କୁଜାର କୁଜ ଛଡ଼େଇଗଲା । ଉଭୟେ ଖୁସି ହୋଇଗଲେ । ଅନ୍ଧ ଚକ୍ଷୁ ପାଇଲା । କୁଜାର କୁଜ ଆଉ ନାହିଁ । ସେମାନେ ଗାଁକୁ ଫେରିଲେ । ଯାହା ଧନ ପାଇଥିଲେ, ତାକୁ ଦୁଇଭାଗ କରିଦେଲେ । ସେଇଦିନଠୁ ସେମାନେ ବେଶ୍ ସୁଖ ଶାନ୍ତିରେ କାଳ କଟାଇଲେ ।

# କାହା ଭାଗ୍ୟ

( ବଙ୍ଗଳାର ଲୋକକଥା )

ବ୍ରାହ୍ମଣୀଟି ତାର ସ୍ୱାମୀ ବ୍ରାହ୍ମଣ ସହିତ ରହୁଥାଏ । ସେମାନଙ୍କର ସାତୋଟି ଝିଅ ।

ଦିନେ ବ୍ରାହ୍ମଣ ସାତ ଝିଅଙ୍କୁ ଡାକି ପଚାରିଲେ "କାହା ଭାଗ୍ୟ ତୁମେ ଖାଉଛ ?"

ସାନ ଛଅଟା ସମସ୍ତେ କହିଲେ—"ବାପା, ଆପଣଙ୍କର ଭାଗ୍ୟ ଯୋଗୁ ଆମକୁ ଦାନା ପାଣି ମିଳୁଛି ।" କିନ୍ତୁ ସାନଟି କହିଲା— "ମୋ ଭାଗ୍ୟ ମୁଁ ଖାଉଛି ।"

ସାନ ଝିଅ ଉତ୍ତରରେ ବ୍ରାହ୍ମଣଟି କ୍ଷୁବ୍‌ଧ ଓ ବିରକ୍ତ । ତାହାକୁ ସେ କିଛି କହିଲେ ନାହିଁ । ପରଦିନ ସକାଳୁ ସାନ ଝିଅକୁ ଧରି ଜଙ୍ଗଲକୁ ଚାଲିଗଲେ । ମନେ ମନେ ଗଣି କଲେ, ଜଙ୍ଗଲରେ ପ୍ରଥମେ ସେ ଯାହାକୁ ଭେଟିବେ, ତାକୁ ସେ ତା ଝିଅକୁ ବାହାଦେବେ । ବ୍ରାହ୍ମଣ ଜଙ୍ଗଲରେ ପଶୁ ପଶୁ ବାର୍‌ହାକୁ ଭେଟିଲେ । ବ୍ରାହ୍ମଣ ତା ନିଷ୍ପତ୍ତିରେ ଦୃଢ଼ । ତେଣୁ ସେ ବାର୍‌ହା ସାଙ୍ଗରେ ତା ଝିଅକୁ ବାହାକରିଦେଲେ । ଝିଅକୁ ବାର୍‌ହା ପାଖରେ ଜଙ୍ଗଲରେ ଛାଡ଼ି ଘରକୁ ଫେରି ଆସିଲେ ।

ଜଙ୍ଗଲରେ ଝିଅ ଏକୁଟିଆ । ତଥାପି ସେ ନିର୍ବିକାର । ବରଂ ଭାଗ୍ୟକୁ ଆଦରି ସନ୍ତୁଷ୍ଟ ହୋଇ ରହିଲା ।

ମଣିଷ ତ ସେ । ଗଛ ମୂଳରେ ରହିପାରିବ ନାହିଁ । ଗଛର ଡାଳ ଭାଙ୍ଗି କୁଡ଼ିଆଟିଏ କଲା । ସେଥିରେ ସେ ରହେ । ପାଖରେ ବାର୍‌ହାକୁ ରଖେ । ସେ ତାର ସ୍ୱାମୀ । ସମ୍ମାନସ୍ପଦ ।

ବାର୍‌ଦ୍ଧାନ୍ତି ମାଟି ଖୋଳି ଜହ୍ନି ମଞ୍ଜି ଆଣି ବୁଣିଲା । କିଛିଦିନ ପରେ ଗଛ ହୋଇ ଜହ୍ନି ଫଳିଲା । ଝିଅଟି ତୋଳିଆଣି ବଣ୍ଟନ କରି ଦିଏ ।

ଗୋଟିକରୁ ଗୁଡ଼ାଏ ଆଉ ଡାଲି । ଆଉ ଖଣ୍ଡରୁ ଦୁଧ ବାହାରେ । ଝିଅଟି ସେ ସବୁ ସଂଗ୍ରହ କରି ରଖେ । ଅଳ୍ପଦିନ ଭିତରେ ଝିଅଟି ଧନୀ ହୋଇଗଲା ।

ତା'ପରେ ସେ ତାର ବାପ ମା ଭାଇ ଭଉଣୀଙ୍କୁ ନିମନ୍ତ୍ରଣ କଲା । ସମସ୍ତେ ଆସିଲେ । ତାଙ୍କୁ ସେ ବଢ଼ିଆ ବଢ଼ିଆ ଖାଦ୍ୟ ଖୁଆଇଲା ।

ଏସବୁ ଦେଖି ତାର ବାପ ମା କହିଲେ—"ଝିଅ ତୁ ଠିକ୍ କହୁଥିଲୁ । ତୁ ତୋ ଭାଗ୍ୟ ଲେଖୁଛୁ ।"



# ମେଣ୍ଢା ଓ ବଳୁଆ

( ବୁକ୍‌ସା ଲୋକକଥା )

ମେଣ୍ଢା ବଳୁଆ ଭାରି ସାଙ୍ଗ । ଦିନେ ସାଥିହୋଇ ସେମାନେ ଖାଦ୍ୟ ଖୋଜି ବାହାରିଲେ । ବାଟରେ ଗଡ଼ଖାଇ ପଡ଼ିଲା । ବଳୁଆଟି ଡେଇଁକରି ପାର ହୋଇଗଲା । ବିଚରା ମେଣ୍ଢା ଡେଇଁ ପାରିଲା ନାହିଁ । ଗଡ଼ଖାଇରେ ପଡ଼ିଗଲା । ସେ ସେଇ ଗଡ଼ଖାଇ ଭିତରେ ଯାଇ ଯାଇ ରଜାଙ୍କ ଉଆସ ପାଖରେ ପହଞ୍ଚିଗଲା । ଉଆସ ଦୁଆର ମୁହଁରେ ଜଗୁଆଳ । ସେ ମେଣ୍ଢାକୁ ଦେଖି କହିଲା—"ତୁ କିଏ ? ତୋର ଏତେ ସାହାସ ଯେ ରଜାଙ୍କ ଉଆସରେ ପଶୁଛୁ ?"

ମେଣ୍ଢାଟି କହିଲା—

"ମେଷ ମୁଁ ମହାପାଳ
ଲାଙ୍ଗୁଳ ଯାକ ମୋ ବାଳ
ମୋଟା ଶିଙ୍ଘ ବଙ୍କା ମୋହର
ସେଥିରେ ମୁଁ ବାଘଙ୍କ ପଥର
ଫଟାଇବି ମୁଣ୍ଡ ସଜାର"

ଏତକ ଶୁଣି ଜଗୁଆଳଟି ଗୁନିଆ। ପ୍ରାଣ ବିକଳରେ ସେଠୁ ସେ ପଳାଇଲା। ମେଣ୍ଢାଟି ନିର୍ଭୟରେ ଉଲ୍ଲାସରେ ପଶିଲା। ପାଖରେ ଭଣ୍ଡାର ଘର। ସେଇଟି ମେଲାଥିଲା। ତା' ଭିତରେ ପଶି ମେଣ୍ଢା ଲଡୁ, ପେଡ଼ା, ଜିଲେଇ, ବରଫି, କାଲାକନ୍ଦ, ବାଲୁସେଇ, ସୋନ-ପାପୁଡ଼ିରୁ ପେଟେ ଖାଇଲା। ଧିରେ ଧିରେ ତା' ଘରକୁ ଫେରି ଆସିଲା।

ସଂଧ୍ୟାବେଳକୁ ଭଲୁଆ ବି ଘରକୁ ଫେରିଲା। ମେଣ୍ଢା ଭଲୁଆର ପୁଣି ଭେଟ ହେଲା। ମେଣ୍ଢାଟି ଖୁସିଥିବାର ଦେଖି ଭଲୁଆ କହିଲା— ଆ, ଆମର ଜିଭ ଚଟାଚଟି ହେବା। ମେଣ୍ଢା ସେଥିରେ ରାଜି। ଦୁହେଁ ଜିଭ ଚଟାଚଟି ହେଲେ। ଭଲୁଆ ମେଣ୍ଢା ଜିଭ ଚାଟି ଜାଣିଲା— ମେଣ୍ଢା ଜିଭ ଭାରି ମିଠା। ନିଶ୍ଚୟ ସେ ଭଲ ଜିନିଷ ଖାଇଛି।"

ଭଲୁଆ ପଚାରିଲା—"କ'ଣ ଖାଇଲୁ ଯେ ତୋ ଜିଭ ଏତେ ମିଠା ହୋଇଛି ?,'

ମେଣ୍ଢା ସଚ୍ଚୋଟ। ସତ କହେ। ସେ ସବୁ କଥା ଗୋଟି ଗୋଟି କରି କହିଲା। ମେଣ୍ଢାଠାରୁ ଶୁଣି ଭଲୁଆ ମନ ଉଚାଟ। ସେ ରାଜା ଘରକୁ ଯିବାକୁ ଉଛନ୍ନ। ମେଣ୍ଢାଠାରୁ ସେ ଗୀତ ଶୁଣି ମୁଖସ୍ଥ କଲା। ତା' ମନ ତ ଲାଗିଛି, ପରଦିନ ଗଡ଼ଖାଇ ଭିତରକୁ ଡେଇଁ ପଡ଼ିଲା।

ଘର୍ଘର ଘର୍ଘର ଯାଇ ଉଆସ ଦୁଆର ମୁହଁରେ ହାଜର । ଜଗୁଆଳ କର୍କଶ କଣ୍ଠରେ ପଚାରିଲା "ତୁ କିଏସେ ? ତୋର ଏତେ ସାହାସ ! ବିନାନୁମତିରେ ରାଜାଙ୍କ ଉଆସରେ ପଶୁଛୁ ।"

ବିଲୁଆଟି ମେଣ୍ଢାଠାରୁ ଢ ତାଲିମ ପାଇଥିଲା, ତେଣୁ ସେ କହିଲା—

"ମେଷ ମୁହିଁ ମହୀପାଳ
ଲାଙ୍ଗୁଳ ଯାକ ମୋ ବାଳ ।
ମୋଟା ଶିଙ୍ଘ ବଙ୍କା ମୋହର
ସେଥିରେ ମୁଁ ଲଗେ ପଥର
ଫଟାଇବି ମୁଣ୍ଡ ରାଜାର ।"

ଏହାଶୁଣି ଜଗୁଆଳ ଡରିଗଲା । ଉଆସ ଦୁଆର ଛାଡ଼ି ପ୍ରାଣ ବିକଳରେ ଭିତରକୁ ପଳାଇଲା । ମେଣ୍ଢାପରି ବିଲୁଆ ବି ଭଣ୍ଡାର ଘରେ ପଶି ଲଡ୍ଡୁ, ବରଫି, ପେଡ଼ା ଜଲବା, କାଲାକନ୍ଦ, ଖାଲୁସେଇ, ସୋନପାପୁଡ଼ି ଖାଇବାରେ ଲାଗିଥାଏ । ଏତିକବେଳେ ସଞ୍ଜେ ବିଲୁଆ ଜଙ୍ଗଲରେ ବୋବାଇଲେ । ଗୋଟିଏ ବିଲୁଆ ବୋବାଇଲେ ଅନ୍ୟମାନେ ବି ବୋବାଇବେ । ଏ ହେଲା ବିଲୁଆଙ୍କର ପ୍ରକୃତି । ତେଣୁ ଏ ବିଲୁଆଟି ବୋବାଇଲା ।

ଉଆସରେ ବିଲୁଆ ବୋବାଉଛି ବୋଲି ଚାରିଆଡ଼ୁ ଲୋକ ଧାଇଁ ଆସିଲେ । ଦେଖିଲେ, ଭଣ୍ଡାରଘରେ ବିଲୁଆଟିଏ ଅଛି । ସମସ୍ତେ ପିଟି ପିଟି ବିଲୁଆକୁ ଦରମରା କରିଦେଲେ ।

ଘୁଷୁରି ଘୁଷୁରି ବିଲୁଆଟି ତାର ଘରକୁ ଫେରିଲା ।



# ମଧ୍ୟ ରାତ୍ରିର ଭୋଜି

( ରୁକ୍‌ସା ଲୋକକଥା )

ବ୍ରାହ୍ମଣ ଓ ବ୍ରାହ୍ମଣୀଟିଏ ଥାଆନ୍ତି । ତାଙ୍କର ସାତ ଝିଅ । ସେମାନେ ଘର ଗରିବ । ଭିକ ମାଗି ଚଳନ୍ତି । ସେମାନେ ବଡ଼ ଅସୁଖ । ଭଲକରି ଖାଇବା ପିଠା ତାଙ୍କ ଭାଗ୍ୟରେ ଜୁଟେ ନାହିଁ । ଥରେ ବ୍ରାହ୍ମଣ ବ୍ରାହ୍ମଣୀକୁ କହିଲା—"ଆମେ ଏମିତି ଦେଖେଁନ ଖାଇ ରହିବା । ତେଣେ କାହିଁ ସୁଆଦିଆ ଖାଦ୍ୟ ଖୁଆନ୍ତୁ ନାହିଁ ।" ବ୍ରାହ୍ମଣୀର ଇଚ୍ଛା, ଥରେ ଭଲକରି ଦି'ଠା ବ୍ରାହ୍ମଣକୁ ଖୁଆନ୍ତା । କିନ୍ତୁ ସାହାସ କରି ପାରେନା । ଯାହା ଭଲ ଜିନିଷ ରାନ୍ଧା ହେବ, ନଅ ଜଣ ଖାଇବାକୁ । କେତେ ପଇସା ଲାଗିବ । ସେ ବା କାହୁଁ ପାଇ ଜୁଟିବ । ସେ କଥା ସେ ବ୍ରାହ୍ମଣକୁ କୁହେ ।

ମନରେ ଯୋଉଠି କଥା ଉଠିଲେ, ମନ ଉଡ଼େ । ଅନୁକୂଳ ମିଳେ ନାହିଁ । ବ୍ରାହ୍ମଣ ଥରେ ବ୍ରାହ୍ମଣୀକୁ କହିଲା—"ହଇଲୋ, ମୋର ଇଚ୍ଛା ଦିଠା ଭଲ ଜିନିଷ ଖାଇବାକୁ । ପିଲାମାନଙ୍କୁ ଦେଲେ ବହୁତ ଖର୍ଚ୍ଚ ପଡ଼ିବ । ଆମେ ପାରିବା ନାହିଁ । ଗୋଟାଏ କଥା କରିବୁ । ସେମାନେ ଶୋଇପଡ଼ିଲା ପରେ ପିଠା ଦିଠା କରିବୁ । ତୋର ମୋର ମନବୋଧ କରି ଖାଇବା ।

ବ୍ରାହ୍ମଣୀଟି ବ୍ରାହ୍ମଣ କଥାରେ ରାଜି ହେଲା । କିନ୍ତୁ ବାପାମାଙ୍କ କଥାଟା ପିଲାମାନେ ଶୁଣିଥିଲେ । ତେଣୁ ସେଦିନ ରାତିରେ ସେମାନେ ଶୋଇଲେ ନାହିଁ କଣ୍ଠା ଗାଳି ଖାଲି ବିଛଣାରେ ପଡ଼ି ରହିଲେ ।

ପିଲାମାନେ ଶୋଇ ଯାଇଛନ୍ତି ବୋଲି ଭାବି ବ୍ରାହ୍ମଣ ପିଠା କରିବାକୁ ବସିଲା । ସେ ଚୁଲିରେ ତାଉଆ ବସାଇ, ଯେମିତି ପିଠାଟିଏ ଯୋଗାଡ଼ିଛି, ପରୀକ୍ଷା କରିବା ବାହାନାରେ ଗୋଟିଏ ଝିଅ

ହଠିଲା । ତାଙ୍କୁ ମା' ପିଠାଟିଏ ଖୁଆଇ ଶୁଆଇ ଦେଲା । ତାପରେ ଦ୍ୱିତୀୟ ପିଠା ପୋଡ଼ାହେଲା ବେଳକୁ ଆଉ ଜଣେ ପରୀକ୍ଷା କରି ହଠିଲା । ତାକୁ ଦ୍ୱିତୀୟ ପିଠା ଖାଇବାକୁ ଦେଇ ଶୋଇବାକୁ କହିଲା । ଏମିତି ପ୍ରତ୍ୟେକ ପିଠା ପୋଡ଼ାହେଲା ବେଳେ ଝିଅଟିଏ ପରୀକ୍ଷା କରି ଉଠେ । ତାକୁ ପିଠାଟିଏ ଖୁଆଇ ବ୍ରାହ୍ମଣୀ ଶୁଆଇ ଦିଏ । ଏମିତି ଭାବରେ ସବୁ ଝିଅମାନେ ଗୋଟେ ଗୋଟେ ପିଠା ଖାଇ ଶୋଇଲେ ।

ଶେଷକୁ ଦୁଇଟି ପିଠା ବାକି ରହିଲା । ବ୍ରାହ୍ମଣ ଓ ବ୍ରାହ୍ମଣୀଙ୍କ ଭାଗରେ ଗୋଟିଏ ଗୋଟିଏ ପିଠା ପଡ଼ିଲା । ବ୍ରାହ୍ମଣ ଓ ବ୍ରାହ୍ମଣୀଙ୍କର କଳ୍ପନା ଜଳ୍ପନା ସବୁ ପାଣି ଫୋଟକାପରି ମିଳାଇ ଗଲା ।



# ସୁନ୍ଦରୀ ଓ ଚତୁରୀ ବୋହୂ

( ରୂପ-ସାଲୋକକଥା )

ବୁଢ଼ାଟିଏ । ତାର ସାତପୁଅଙ୍କୁ ସାତବୋହୂ । ବୋହୂ ଭିତରୁ ସାନଟି ଖୁବ୍ ସୁନ୍ଦରୀ । ଅନ୍ୟମାନଙ୍କୁ ଅସୁନ୍ଦରୀ କହିହେବ ନାହିଁ, କିନ୍ତୁ ଚଳନୀୟ ।

ଗୋଟିଏ ଦେବତ ସାନବୋହୂକୁ ଦେଖିପକାଇ । ସେତିକାବେଳୁ ତା ମନ ତା'ଠି ଲାଗିଛି । ତାକୁ କେମିତି ଧରିନେଇ ଯିବ, ସେଇଠାରୁ ତାର ଚିନ୍ତା । ସେଇ ମତଲବରେ ଦିନେ ସେ ବୁଢ଼ା ଘରେ ପହଞ୍ଚିଲା । ବୁଢ଼ା ଘରେ ତ ତାକୁ କେହି ଚିହ୍ନି ନଥିଲେ ।

ସମସ୍ତେ ଭାବିଲେ, ସେ ଜଣେ କୁଣିଆ । ତାଙ୍କୁ ସେମାନଙ୍କର ଆଦର ଦେଖିବ କ'ଣ ? ତାକୁ ନେଇ ଖଟରେ ବସାଇଲେ, ଗୋଡ଼ ଧୋଇବାକୁ ପାଣି ଆଣିଦେଲେ । ତାପରେ ତା ପାଇଁ ହୁକାଟିଏ ସଜାଡ଼ି ଦେଲେ ।

ଲୋକଟି ଆଗେ ଆଗେ ତା ଘରଟକୁ ଦେଖି ନାହିଁ । ବୁଢ଼ାଟି ଆସି ତା ପାଖରେ ବସି ପଚାରିଲା "ବାପ୍ର ! ମୁଁ ତମକୁ ଚିହ୍ନି ପାରୁନାହିଁ । ତମ ଘର କେଉଁଠି ? ତମେ ଆମର କ'ଣ ହେବ ?"

ଲୋକଟି କହିଲା "ମୁଁ ତମର ସାନଟୋକାର ବଡ଼ଭାଇ । ଆମର କାଲି ଭୋଜ । ମୁଁ ତାକୁ ଘରକୁ ନେବାକୁ ଆସିଛି ।"

ଏକଥା ଶୁଣି ବୁଢାଟି କହିଲା—ହଉ, ଭଲକଲ । ତାପରେ ସବୁ ଟୋକାମାନଙ୍କୁ ଡ଼ାକି କହିଲା—"ସାନଟୋକାର ବଡ଼ଭାଇ ଆସିଛି । ଯାଅ, ତାକୁ ମୁଣ୍ଡିଆ ମାର ।"

ବୁଢା କଥାରେ ଟୋକାମାନେ ଯାଇ ମୁଣ୍ଡିଆ ମାରିଲେ । କିନ୍ତୁ ସମସ୍ତେ ଆବାକାବା । ସମସ୍ତେ ସାନଟୋକାର ବଡ଼ ଭାଇକୁ ଦେଖିଛନ୍ତି । ଏ ତ ସେ ନୁହେଁ । ତେଣୁ ସମସ୍ତଙ୍କ ମନରେ ସନ୍ଦେହ । ସେଥିପାଇଁ ସେମାନେ ସେଠି ଠିଆ ହୋଇ ରହିଲେ ।

ଶାଶୁ ଆସି କହିଲେ—"ଆଲୋ ଠିଆ ହୋଇଛ କ'ଣ ? ଯାଅ କୁଣିଆଙ୍କ ପାଇଁ ରାନ୍ଧ ।"

ସାନ ଟୋକାଟିର ରାନ୍ଧଣା ଭାରି ବଢ଼ିଆ । ସେ କୁଣିଆ ପାଇଁ ଭାତ, ଡ଼ାଲି, ଆଳୁ ତରକାରୀ କଲା । କୁଣିଆ ଖାଇସାରିବା ପରେ ବୁଢା ହୁକାଟିଏ ଆଣି ଟାଣିବାକୁ ଧରେଇ ଦେଲା ।

କୁଣିଆ ଘରକୁ ଯିବାକୁ ଡରୁଛନ୍ତି । ବୁଢ଼ାକୁ ସେ କହିଲା—"ଘରେ ବହୁତ କାମ । ହେଳା କଲେ ଅସୁବିଧା ହେବ ! ବୋଦୁକୁ ଛାଡ଼ିଦେଲେ ସେ ଶୀଘ୍ର ଚାଲିଯିବ ।"

ବୁଢ଼ା ସାନ ବୋଦୁକୁ କହିଲା—"ଭାଇ ତ ନେବାକୁ ଆସିଛି । ଡେରି ଆଉ କାହିଁକି ? ଶୀଘ୍ର ବାହାରିପଡ଼ ।"

ସାନବୋଦୁଟି କହିଲା ! "ମୁଁ ତ ସେ ଭାଇଙ୍କୁ କେବେ ଦେଖି ନାହିଁ । ତାଙ୍କ ସାଥିରେ କେମିତି ଯିବି ?"

ବୁଢ଼ା କହିଲା—"ପାଗଳୀ ! ବାପା ଭାଇ ତ କାମରେ ବ୍ୟସ୍ତ ଥିବେ । ଫୁରୁସତ ନଥିବ । ଏ ଦୁଏତ ତୋର ଲେଖାଯୋଖା ଭାଇ । ମନା କାହିଁକି କରୁଛୁ । ବାହାରିପଡ଼ ।"

ସାନବୋଦୁର ଆଉ ଅବିଶ୍ୱାସ କରିବାର କିଛି ନଥିଲା । ଘରକୁ ଯିବ ବୋଲି ମନ ତାର ଆନନ୍ଦ । ଦିନେ ଓଳିଏରେ ସେ ଫେରିବ । ତେଣୁ ଲୁଗା ଦି'ଖଣ୍ଡ ନେଲେ ଯଥେଷ୍ଟ । ତାକୁ ପୁଡ଼ିଆଟିଏ କଲା । ନିଜେ ବାହାରି ପଡ଼ିଲା । ଚୋରକୁ ଆସି କହିଲା—"ଭାଇ ଚାଲ ଏଥର ଯିବା ।"

ଚୋରଟି ତ ଧୂର୍ତ୍ତ । ସମସ୍ତଙ୍କ ମନ ନେଲେ, ଅବିଶ୍ୱାସ ହେବ ନାହିଁ । ସେଥିପାଇଁ ଜଣ ଜଣ କରି ସମସ୍ତଙ୍କଠାରୁ ସେ ବିଦାୟ ନେଇ ବାହାରିଲା । ସେ ଆଗେ ଆଗେ । ବୋଦୁଟି ତା ପଛେ ପଛେ ।

ସେମାନେ ଗାଁ ଛାଡ଼ି ବହୁତ ବାଟ ଚାଲି ଆସିଲେଣି । ଏଥର ଚୋରଟି ଜଙ୍ଗଲ ରାସ୍ତା ଧରିଲା । ଏହା ଦେଖି ବୋଦୁଟି ଟିକେ ଅଟକିଯାଇ ପଚାରିଲା—"ଭାଇ ! ଏ ରାସ୍ତା ତ ଜଙ୍ଗଲକୁ । ଆମ ଗାଁକୁ ନୁହେଁ । ଏବାଟେ କାହିଁକି ଯିବା ?"

ସ୍ତ୍ରୀରଟି କହିଲା—"ତୁ ଜାଣିନୁ । ଏଇଟା ଅଳ୍ପ ବାଟ । ଜଲଦି ପହଞ୍ଚିବା ।"

ବୋହୂଟି ତ ତାକୁ ଭାଇ ବୋଲି ଧରି ନେଇଛି । ତେଣୁ ତାର ସନ୍ଦେହ କରିବାରେ କିଛି ନଥିଲା । ସେ ତା ପଛେ ପଛେ ଚାଲିଲା ।

କିଛି ବାଟ ଚାଲିଗଲେ ଜଙ୍ଗଲରେ ପକ୍ଷୀଟିଏ ଗାଇଲା । ତା ଶୁଣି ବୋହୂଟି ପଚାରିଲା—"ଭାଇ ! ସେ ଚଢ଼େଇଟି କ'ଣ କହୁଛି ।"

"ଭଉଣୀ ! ପକ୍ଷୀମାନେ ଏମିତି ଏଠି ବୋବାନ୍ତି । ଏହା ଥିଲା ସ୍ତ୍ରୀରର ଉତ୍ତର ।"

କଥାବାର୍ତ୍ତା କରି ବୋହୂଟିର ସାହସ ବଢିଗଲାଣି । ତେଣୁ ସେ ପଚାରିଲା, "ଭାଇ ତମ ଘର କେଉଁଗାଁରେ ?"

ଚୋରଟି ଟିକେ ରାଗିକରି କହିଲା—"ମତେ ଭାଇ ଡାକିବା ବନ୍ଦ କର । ମୁଁ ତୋ ଭାଇ ନୁହଁ । ମୁଁ ତୋର ସ୍ୱାମୀ । ମୋତେ ସ୍ୱାମୀ ବୋଲି ଡାକ ।"

ଚୋରଟି ପାଟିରୁ ଏକଥା ଶୁଣି ବୋହୂଟି ଡରିଗଲା । ସେ କିନ୍ତୁ ଖୁବ୍ ଚାଲାକ୍ । କଥାଟା ଏଡ଼ାଇବାକୁ ସେ ଜମା ଚାହିଁଲା ନାହିଁ । ସେ ସୁମ୍ ଧୁମ୍ ମାରିକ । ଧୀରେ ଧୀରେ ଚୋରକୁ ଅନୁସରଣ କଲା ।

ଜଙ୍ଗଲ ମଝିରେ ଚୋରର ଘର । ଘରେ ତା'ର ବୁଢ଼ୀମା । ତା ସାଙ୍ଗକୁ ଆଉ ଗୋଟିଏ ମାଈ ଗଧ । ଚୋରଟି ଘରେ ପହଞ୍ଚି ତା ମାକୁ କହିଲା—"ମାଲୋ ! ମୁଁ ଗୋଟିଏ କନ୍ୟା ଆଣିଛି ।"

ମା ଉତ୍ତର ଦେଲା—"ଯଦି କନ୍ୟାଟିଏ ଆଣିଛୁ, ବଜାରକୁ ଯାଇ ଖଣ୍ଡଖପଣ କିଣିଆଣେ । ବାହାଘର ହେବ ।"

ଚୋରର ତ ମନ ଲାଗିଛି । ପରଦିନ ସକାଳୁ ଉଠି ବାହାଘରର ଜିନିଷ କିଣିବାକୁ ବାହାରିଗଲା ।

ବୋହୂଟିଏ ପାଇ ବୁଢ଼ୀ ଖୁବ୍ ଖୁସି । ଭାବିଲା—ବୋହୂଟି ତାର ଭବିଷ୍ୟତ । ଧନ ଦଉଲତ ଦେଖିଲେ ସେ ଖୁସି ହେବ । ତେଣୁ ପୁଅ ଚୋରିକରି ଆଣିଥିବା ଅଳଙ୍କାର, ଲୁଗାପଟା, ଜିନିଷପତ୍ର ଓ ଟଙ୍କା-ପଇସା ସବୁ ବୋହୂକୁ ଦେଖାଇ ଦେଲା । କହିଲା—"ବୋହୂ ଲୋ ! ଏ ସବୁ ତୋର । ଏହାକୁ ହୁସିଆରରେ ସାଇତି କରି ରଖିବୁ ।"

ଚୋର ମା ବୋହୂଟିକୁ ନିଜର ବୋଲି ଭାବିଲାଣି । ତେଣୁ ତାକୁ ସେ କହିଲା—"ମାଲୋ, ମୋ ମୁଣ୍ଡରେ ବହୁତ ଉକୁଣୀ । ଟିକେ ଦେଖି ଦିଅନୁନ ।"

ବୋହୂଟି ବୁଢୀର ମୁଣ୍ଡକୁ ଦେଖି ବସିଲା । ଟିକକ ପରେ କହିଲା—"ତମ ମୁଣ୍ଡରେ ପ୍ରବଳ ଉକୁଣୀ । ଉଷୁମ ହାଣ୍ଡି ମୁଣ୍ଡରେ ଉଗୁଡ଼େଇ ଦେଲେ ଉକୁଣୀ ସ[illegible] ।"

ବୁଢୀ ଏଥିରେ ରାଜି । ବୋହୂ ଚୁଲି ଜାଳି ହାଣ୍ଡିଟି ତତେଇଲା । ବୁଢ଼ୀଟିର ବୋହୂ ଉପରେ ପୁରା ବିଶ୍ୱାସ । ଉକୁଣୀ ମରିବେ ବୋଲି ସେ ଖୁବ୍ ଖୁସି । ତେଣୁ ସେ ଅନ୍ୟମନସ୍କ । ଏହାର ସୁବିଧା ନେଇ ବୋହୂଟି ହାଣ୍ଡିଟିକୁ ଖୁବ୍ ତତେଇ ଦେଲା । ତାପରେ ଆସ୍ତେକନେ ନେଇ ବୁଢ଼ୀ ମୁଣ୍ଡ ଉପରେ ଉଗୁଡ଼େଇ ଦେଲା । ବୁଢ଼ୀ ଆଉ ଯାଏ କୁଆଡ଼େ । ହାଣ୍ଡିର ବାମ୍ଫରେ ସେ ଅଣନିଶ୍ୱାସୀ । ଗରମରେ ମୁଣ୍ଡଟା ତାର ଠୋ-କିନେ ଫାଟିଗଲା । ସେ ମରିଗଲା ।

ବୋହୂଟି ଦେଖିଲା, ବୁଢ଼ୀଟି ମରିଗଲାଣି । ଚୋର ଆସିବାକୁ ବହୁତ ଡେରି । ସେ ଘରେ ଯେତେ ଯାହା ମୂଲ୍ୟବାନ ଜିନିଷ ଥିଲା

ସବୁକୁ ବାନ୍ଧି ଫଣ୍ଡିଲି କଲା । ନିଜେ ପୁରୁଷବେଶ ହେଲା । ଫଣ୍ଡିଲ୍‌ଟିକୁ ଚୋରର ମାଈ ଗଧ ଉପରେ ଲଦି ନିଜ ଘରକୁ ଚାଲିଲା ।

ଏଣେ ଚୋରଟି ବାହାଘର ପାଇଁ ବହୁତ ଜିନିଷ କିଣିଲା । ତାକୁ ଧରି ଘରକୁ ସେ ଫେରୁଥାଏ ।

ବାଟରେ ଉଭୟଙ୍କର ଦେଖା ବାଟୋଇକୁ ଦେଖି ଚୋର ମନରେ ସନ୍ଦେହ ଦହ୍ଲ । ତେଣୁ ସେ ଗୁଣି ହେଲା "ଏ ତ ଦେଖିବାକୁ ଠିକ୍ ମୋ ସ୍ତ୍ରୀ ଭଳି । ଗଧ ବି ଏକବାରେ ମୋ ଗଧ ପରି । ଏ ବାଟୋଇଟି କିଏ ?"

ଏ କଥା ଶୁଣି ବାଟୋଇଟି ହଠାତ୍ ଧମକ ଦେଇ କହିଲା— "ତମ ମୁଣ୍ଡ ଖରାପ କି ? କ'ଣ ଗୁଡ଼େ ତମେ ଗପୁଛ ?"

ଚୋରଟି ବାଟୋଇ କଥା । ଶୁଣି ଘୁନଆ । ପାଟିରୁ କଥା ବାହାରିଲା ନାହିଁ । ଅସ୍ପଷ୍ଟ ଶବ୍ଦରେ କହିଲା—"ଆଜ୍ଞା । ମୁଁ ଆପଣଙ୍କୁ କିଛି କହୁନାହିଁ । ମୁଁ ମୋ ଘରକୁ ଯାଉଛି ।"

ଏହିପରି ଭାବରେ ଚତୁର ବୋହୂଟି ଘରକୁ ଫେରି ଆସିଲା । ସାଥିରେ ତାର ଚୋରର ସମସ୍ତ ଧନସମ୍ପତ୍ତି ।



# ଜନ୍ମ ବଡ଼ ମଧୁର

( ବୁକ୍‌ସା ଲୋକକଥା )

ବୁଢ଼ୀଟିଏ । ତାର ଗୋଟିଏ ବୋଲି ପୁଅ । ତା ନାଁ ପ୍ରସାଙ୍ଗ । ସେ କିନ୍ତୁ ଭାରି ବୋକା ।

ବୁଢ଼ୀ ଦିନେ ପୁଅକୁ କହିଲା—"ପୁଅରେ ମୁଁ ବୁଢ଼ୀ ହୋଇ ଗଲିଣି । କାମକୁ ଆଉ ପାରୁନାହିଁ । ବୋହୂ ତୋର ବାପଘରେ । ତୁ ଯାଇ ତାକୁ ଘେନିଆ । ସେ ଆସିଲେ ମୋ ସାଥିରେ ଘର କାମ କରିବ । ମୋତେ ଟିକିଏ ଉଶ୍ୱାସ ହୋଇଯିବ ।"

ପ୍ରସାଙ୍ଗ ତା ମାଆ କଥାରେ ରାଜି । କିନ୍ତୁ ଶ୍ୱଶୁର ଘର ବହୁତ ଦୂର । ସେ କେମିତି ଯିବ, ସେଇଟା ତାର ଚିନ୍ତା । ମା କହିଲା— "ସେଥିପାଇଁ, ତୁ କିଛି ଭାବନାହିଁ । ମୁଁ ବାନ୍ଧିକରି ଖାଇବା ଜିନିଷ ଦେଇଦେଉଛି । ଯେଉଁଠି ଖାଇବା ଜିନିଷ ସରିଯିବ, ତୁ ରାତିଟା ସେଇଠି ରହିଯିବୁ ।"

ପ୍ରସାଙ୍ଗ ଖାଇବା ଜିନିଷଟିକ ଧରି ସକାଳୁ ସକାଳୁ ଘରୁ ବାହାରି ପଡ଼ିଲା । ପାଖରେ ତ ଖାଇବା ଜିନିଷ । ମନ ତାର ସେଇଠି ଲେଣ୍ଡୁ ଘର । ଗୁଡ଼ୁ ଗୁଡ଼ୁ ଖାଇବା ଜିନିଷ ପାଟିରେ ପକାଇବା ଆରମ୍ଭ କରିଦେଲା । ଗାଁ ମୁଣ୍ଡରେ ପହଞ୍ଚିଲା ବେଳକୁ ଖାଦ୍ୟ ଶେଷ । ସେ ରାତିଟି ସେଇଠି ରହିଲା । ପରଦିନ ସକାଳେ ଘରେ ହାଜର । ମା ଦେଖି ଆଶ୍ଚର୍ଯ୍ୟ । ଏତେ ସକାଳୁ କେମିତି ଆସିଲୁ ବୋଲି ପଚାରିଲା । ପ୍ରସାଙ୍ଗ କହିଲା—"ମୁଁ ତ ଶ୍ୱଶୁର ଘରକୁ ଯାଇନାହିଁ । ଗାଁ ମୁଣ୍ଡରେ ଖାଦ୍ୟ ସରିଗଲା । ସେଇଠି ରାତିରେ ରହିଲି । ସକାଳୁ ଫେରି ଆସିଲି ।"

ବୁଢ଼ୀ ମୁଣ୍ଡରେ ହାତ ଦେଲା । ତାପରେ, ବୁଢ଼ୀ ବଡ଼ବାର ପ୍ରସାଦକୁ ତାର ଶ୍ୱଶୁର ଘରକୁ ପଠାଇଲା । ହାତରେ ତାର ଖାଇବା ଜିନିଷ ବି ଦେଇଥାଏ । କିନ୍ତୁ ସବୁ ଥର ସେ ଫେରିଆସେ । ସେଇ ସେଇ ଉତ୍ତର ତାର—'ଖାଇବା ଜିନିଷ ସରିଗଲା । ତେଣୁ ଫେରି ଆସିଲି ।'

ପୁଅର ଏ ଢଙ୍ଗ ଦେଖି ବୁଢ଼ୀ ଚିନ୍ତିତ, ବ୍ୟଥିତ । ଭାବିତ ବି । ଭାବେ—ଏ ପୁଅ କେମିତି ବୋହୂକୁ ଆଣି ଘର କରିବ ।

ଶେଷକୁ ବୁଢ଼ୀକୁ ଗୋଟିଏ ଉପାୟ ଦିଶିଲା । ସେ ଚାଉଳ ପିଠା ଗୋଟିଏ ଠେକିରେ ଭର୍ତ୍ତିକଲା । ଠେକିଟିକୁ ପ୍ରସାଦ ବେକରେ ଝୁଲାଇ ଦେଲା । ତାପରେ ପ୍ରସାଦକୁ କହିଲା—"ଏଥିରେ ଆଙ୍ଗୁଠି ବୁଡ଼େଇ ରୁଟି ଚାଟି ଖିବୁ । ତାହାହେଲେ, ବାଟ ଜଣାପଡ଼ିବ ନାହିଁ ।

ପ୍ରସାଦ ଘରୁ ବାହାରିଗଲା । ବାଟଯାକ ପିଠାରେ ଆଙ୍ଗଠିଟିକୁ ବୁଡ଼େଇ ସେ ଚାଟୁଥାଏ । ଏମିତି ଯାଇ ଯାଇ ସେ ଶ୍ୱଶୁର ଘରେ ପହଞ୍ଚିଲା । ସେଠି ପହଞ୍ଚି ଲୁଗାଟିଏ ବେକ ଚାରିପଟେ ଗୁଡ଼େଇଦେଲା ଯେମିତିକି ଠେକିଟି କାହା ନଜରରେ ପଡ଼ିବ ନାହିଁ ।

ପ୍ରସାଦକୁ ଶ୍ୱଶୁର ଘରେ ଖାଇବାକୁ ଡାକିଲେ । ସେ କିନ୍ତୁ ମନାକଲା । ରାତିରେ ତା ସ୍ତ୍ରୀ ଆସି ତାକୁ ଶୋଇବାକୁ କହିଲା । ସେ ସେମିତି ବସିଥାଏ । ସେଠୁ ଜମା ଉଠିଲା ନାହିଁ । ଏଥିରେ ତା ସ୍ତ୍ରୀ ଖୁବ୍ ରାଗିଗଲା । ଗାରୁ ଗାରୁ କହିଲା-'ମୁଁ ତାଙ୍କୁ ଶୋଇବାକୁ କହୁଛି, ଅଥଚ ସେ ଶୋଇବାକୁ ଯାଉନାହାନ୍ତି ।'

ପ୍ରସାଦ ଠେକିଆଡ଼କୁ ଆଙ୍ଗୁଠି ଦେଖାଇ କହିଲା—"ଏଇ

ମୋତେ ଶୁଆଇ ଦେଉନାହିଁ କି ଖୁଆଇ ଦେଉନାହିଁ ।"

"ଯାଅ, ତାହାର ଖୁଣ୍ଟରେ ତାକୁ ବାନ୍ଧେଇ ଛାଡ଼ିଦିଅ ।" ସ୍ତ୍ରୀ ତାର ଜବାବ ଦେଲା ।

ପ୍ରସାଦ ତା ଭିତରୁ ଦଉଡ଼ିଟି ଖୋଲିଦେଇ ଠେକଟିକୁ ତାହାର କରିଦେଲା । ସେତେବେଳକୁ ଅନ୍ଧାର । ଲୁହିଁକୁ ମୁହଁ ଦିଶୁନଥାଏ । ବାହାରେ ପ୍ରସାଦର ଶ୍ୱଶୁର ଠିଆ ହୋଇଥାଏ । ପ୍ରସାଦ ତାକୁ କାଠ ଖୁଣ୍ଟ ବୋଲି ଭାବି, ତା ମୁଣ୍ଡରେ ଠେକଟିକୁ ବାନ୍ଧେଇ ଦେଲା ।

ହଠାତ୍ କ'ଣ ହେଲା, ବୁଢ଼ାଟି ଜାଣିପାରିଲା ନାହିଁ । ସେ ଚିତ୍କାର କରି କହିଲା—"ମୋ ମୁଣ୍ଡରେ ବଜ୍ର ପଡ଼ିଗଲା ।"

ବୋକା ପ୍ରସାଦ ଏ ସବୁ ଦେଖି ଘୁନଆ । ସେ ତା ସ୍ତ୍ରୀ ପାଖକୁ ଧାଇଁଯାଇ ସବୁକଥା କହିଲା ।

"ଚୁପ ରହ । ଏ ବିଷୟରେ କାହାକୁ କହନାହିଁ ।" ସ୍ତ୍ରୀଟି କହିଲା ।

ବର୍ତ୍ତମାନ ବୁଢ଼ାର ମୁଣ୍ଡରୁ ପାଟିଦେଇ ସିଙ୍ଘଗୁଡ଼ାକ ବୋହିଲାଣି । ସେ ତାକୁ ଚାଟି ଖଜାଇଲା ।

ବୁଢ଼ା ବଡ଼ ପାଟିରେ ଘର ଲୋକଙ୍କୁ କହିଲା—"ଆରେ ଏ ବଜ୍ରଟା ଭାରି ମଧୁର ।"



# କୂଅର ଏ କାନ ଅଛି

( ଆରୁ ଲୋକକଥା )

ପୁରା କାଳରେ ଜଣେ ରାଜା ଥିଲେ । ତାଙ୍କର ଗୁଟେଗୋଟି କାନ । ତାକୁ ଲୁଚାଇବା ପାଇଁ ସବୁବେଳେ ସେ ପଗଡ଼ିଟିଏ ପିନ୍ଧିଥାଆନ୍ତି । ସେ ପଗଡ଼ିଟି କେବେହେଲେ ବାହାର କରନ୍ତି ନାହିଁ ।

ଥରେ ରାଜା ଜଙ୍ଗଲକୁ ଶିକାର କରିବାକୁ ଯାଇଥିଲେ । ସାଥିରେ ମନ୍ତ୍ରୀ । ଘୋଡ଼ାଟି ରାଜା ଜୋରରେ ଛୁଟାଇଥାନ୍ତି । ହଠାତ୍ ରାଜାଙ୍କର ପଗଡ଼ିଟି ଗଛରେ ଲାଗିଗଲା । ରାଜା ଚାଲିଗଲେ ସିନା ଆଗକୁ । କିନ୍ତୁ ପଗଡ଼ି ଲାଗି ରହିଗଲା ଗଛରେ । ରାଜାଙ୍କ ମୁଣ୍ଡ ତ ଖୋଲା । ତାରି କାନ ଦେଖାଗଲା । ମନ୍ତ୍ରୀ ତାକୁ ଦେଖିନେଲେ ।

ରାଜାଙ୍କର ସବୁ ପରିଶ୍ରମ ପଣ୍ଡ । ଏତେଦିନର ଲୁଚାଇ ରଖିବାର ଉଦ୍ୟମ ଆଜି ବୃଥା । ସବୁ କଥା ଆଜି ପଦାରେ ପଡ଼ିଗଲା । ଏଥିପାଇଁ ରାଜା କ୍ଷୁବ୍ଧ । ଅପ୍ରସ୍ତୁତ ବି । ତାଙ୍କୁ ଖୁବ୍ ଖରାପ ଲାଗିଲା । ସେ ଭାବିଲେ ଯାହାହେଉ କଥାଟା କାହାରି ପଦାକୁ ନଯାଉ । ସେଥି-ପାଇଁ ସେ ସ୍ଥିର କଲେ ମନ୍ତ୍ରୀଙ୍କୁ ଦାବଦେଲେ କଥାଟା ପ୍ରଘଟ ହେବ ନାହିଁ । ତେଣୁ ସେ ମନ୍ତ୍ରୀଙ୍କୁ କହିଲେ—"ଖବରଦାର, ମୋ ଗଧ କାନ କଥା ବାହାରେ ପ୍ରକାଶ କରିବ ନାହିଁ । କଲେ, ତମ ବଂଶ ମୁଁ ନିପାତ କରିଦେବି ।"

ମନ୍ତ୍ରୀ ଏକେ ତ ଅସମ୍ଭବ କଥାଟିଏ ଦେଖିଲେ । ଦ୍ୱିତୀୟରେ ପ୍ରକାଶ କରିବାକୁ ମନା ହେଲା । ତାଙ୍କୁ ଏସବୁ ଅଡୁଆ ଲାଗିଲା । ସେଥିପାଇଁ କଥାଟା ପ୍ରକାଶ କରିବାକୁ ତାଙ୍କର ଖୁବ ଇଚ୍ଛା । କିନ୍ତୁ

ଭୟ—କାଳେ କହିଦେଲେ, ରଜା ଜାଣିବେ । ସର୍ବନାଶ ହେବ ! ତେଣୁ ଭୟରେ ସେ ଏକଥା କାହାକୁ କହନ୍ତି ନାହିଁ ।

ଦିନପରେ ଦିନ ଗଡ଼ିଗଲା । କଥାଟି ଯିନା ଚାପି ରଖିଲେ, କିନ୍ତୁ ମନ୍ତ୍ରୀଙ୍କ ମନରେ ଶାନ୍ତି ରହିଲା ନାହିଁ । ସବୁବେଳେ ମନ ଖାଲି ହନ୍ତସନ୍ତ । କୌଣସି କାମରେ ମନ ଲାଗେ ନାହିଁ । ସବୁବେଳେ ମନେପଡ଼େ—ରଜାଙ୍କର ଚାରି କାନ । ସେ ବହୁତ ବ୍ୟସ୍ତବ୍ୟସ୍ତ ହୋଇ ପଡ଼ିଲେଣି । ହେଲେ କଥାଟା ପ୍ରକାଶ ନକଲେ, ନିସ୍ତାର ନାହିଁ ।

ଦିନେ ସେ ଯାଉଥିଲେ । ବାଟରେ କୂଅଟିଏ ନଜରରେ ପଡ଼ିଲା । ଜାଗାଟି ସମ୍ପୂର୍ଣ୍ଣ ନିଘୋଟିଆ । ହେଲେ କଥାଟି ଯିନା ମଣିଷଙ୍କୁ କହିବାକୁ ମନା—କିନ୍ତୁ କୂଅକୁ କହିଲେ କ୍ଷତି କ'ଣ ? କୂଅତ କାହାକୁ କହିବ ନାହିଁ । ସୁଯୋଗର ପ୍ରଶ୍ନ କାହିଁକି ଉଠୁଛି ! ତେଣୁ, ସେ କୂଅ ଭିତରକୁ ମୁହଁକରି କହିଲେ—"ଆମ ରଜାଙ୍କର ଚାରୋଟି କାନ ।" ମନର କଥା ପ୍ରକାଶ କରିବାରୁ ମନ୍ତ୍ରୀ ବର୍ତ୍ତମାନ ଆଶ୍ୱସ୍ତ । ସୁସ୍ଥ । ତାଙ୍କ ମୁଣ୍ଡ ଉଶ୍ୱାସ ହୋଇଗଲା । ଦୈନନ୍ଦିନ କାମ ସୁରୁଖୁରୁରେ ଏଥର କରିଲେଣି । ଇତି ମଧ୍ୟରେ ବର୍ଷଟିଏ ବିତିଗଲା । କୂଅ ଭିତରେ ଥିବା ଗଛଟି ଏବେ ଦ୍ରୁମ । ତାକୁ ଚଢ଼େଇଟିଏ କାଟିନେଇ ତାବଲା, ସାରଙ୍ଗୀ ଓ ଧୁଡୁକି କରିଲା । କିନ୍ତୁ ତାକୁ ବଜାଇବା ମାତ୍ରେ ଶବ୍ଦ ବାହାରେ 'ଆମ ରଜାଙ୍କର ଚାରିକାନ' ।

ଜଣେ ଗାୟକ ସେ ସବୁ ବାଦ୍ୟଯନ୍ତ୍ର କିଣିନେଲା । ନୂଆ ବାଦ୍ୟ ଯନ୍ତ୍ର ରଜାଙ୍କ ଆଗରେ ବଜାଇବ, ମୋଟା ପାରିତୋଷିକ ପାଇବ ଏହାହିଁ ଥିଲା ଗାୟକର ବିଶ୍ୱାସ । ତେଣୁ ସେ ରାଜଦରବାରକୁ ଗଲା । ସେ ରଜାଙ୍କ ଆଗରେ ବାଦ୍ୟଯନ୍ତ୍ର ବଜାଇଲା । ଆଶ୍ଚର୍ଯ୍ୟ । ଯାହା

ବଜାଉଥିଲା, ତା ତ ବାଜିଲା ନାହିଁ । ଖାଲି ସବୁଥିରୁ ଶବ୍ଦ ବାହାରିଲା "ଆମ ରାଜାଙ୍କର ଗଧକାନ ।"

ରାଜା ଏକଥାଶୁଣି କ୍ରୁଦ୍ଧ । କ୍ରୋଧାନ୍ୱିତ । ରାଜାଦେଶରେ ଗାୟକଙ୍କୁ କଏଦୀଖାନାରେ ରଖାଗଲା । ଗାୟକ ତାର ଭାଗ୍ୟର ବିଡମ୍ବନା ପାଇଁ ଉଦ୍‌ବ୍ରତ । ବ୍ୟସ୍ତ ! ଯେତେ ଚେଷ୍ଟାକଲା, କାରଣ ବୁଝି ପାରିଲା ନାହିଁ । ରାଜା ସେତିକରେ ସନ୍ତୁଷ୍ଟ ହେଲେ ନାହିଁ । ମନ୍ତ୍ରୀଙ୍କର ପରିବାରକୁ ଧରି ଆଣିଲେ । ରାଜାଙ୍କ ଆଦେଶରେ, ସେମାନଙ୍କୁ ବଳଭଣ୍ଟଣା ପେଷଣ ଆଜରେ ପକାଇ ପେଷି ଦିଆଗଲା ।

ମନ୍ତ୍ରୀ ବର୍ତ୍ତମାନ ଏକାକୀ । ସେ ସବୁବେଳେ ଚିନ୍ତା କରନ୍ତି— "ସତରେ କ'ଣ କୁଅର କାନ ଅଛି ?"



# ଚତୁର ଠେକୁଆ

( ଥାରୁ ଲୋକ କଥା )

ବାଘଟିଏ ବୁଢା ହୋଇଗଲା । ଏଥର ଶିକାର କରିବାକୁ ସେ ଅକ୍ଷମ । ତେଣୁ ତାର ବଞ୍ଚିରହିବା ପାଇଁ ପ୍ରତିଦିନ ପଶୁଟିଏ ଦରକାର । ସେ ତ ଜଙ୍ଗଲର ରାଜା । ଜଙ୍ଗଲର ସବୁ ପଶୁମାନଙ୍କୁ ଆଦେଶ ଦେଲା, ସବୁଦିନେ ପାଳକରି ଗୋଟିଏ ପଶୁ ତା ନିକଟକୁ ଆସିବେ । ତାକୁ ସେ ଖାଇବ ।

ପଶୁରାଜଙ୍କର ଆଦେଶ । ଶିରୋଧାର୍ଯ୍ୟ । ଅମାନ୍ୟ କରିବାକୁ କାହାର ସାହସ କୁଳାଇଲା ନାହିଁ । ତେଣୁ ପ୍ରତିଦିନ ପାଳକରି ଜଣେ ଲେଖାଏଁ ପଶୁ ଆସନ୍ତି । ତାଙ୍କୁ ବାଘ ଖାଏ । ଏମିତି କିଛିଦିନ ଚାଲିଗଲା ।

ସେଦିନ ଠେକୁଆର ପାଳି । ବଣରେ ସେ ମନ ଦୁଃଖରେ ଚାଲିଥାଏ । କୂଅଟି ଦେଖି ଅଟକି ଗଲା । କୂଅ ଭିତରକୁ ଉଣ୍ଡିଲା । ପାଣିରେ ତାର ନିଜର ପ୍ରତିବିମ୍ବ । ସ୍ଥିରଟି କିନ୍ତୁ ତା ଆକାରରୁ ଆହୁରି ବଡ଼ ଜଣାପଡ଼ିଲା । ଠେକୁଆଟି ଟିକିଏ ଚମକିଲା । ଟିକିଏ ସେଠି ରହି କ'ଣ ଭାବୁଥିଲା । ତାପରେ ପୁଣି ଡେଇଁ ଡେଇଁ ବାଘ ପାଖକୁ ଚାଲିଲା । ଠେକୁଆଟି ବାଘ ନିକଟରେ ପହଞ୍ଚିଲା ସତ, କିନ୍ତୁ ଟିକିଏ ଡେରିରେ । ସେଥିପାଇଁ ବାଘ ରାଗିକରି ଅସ୍ଥିର । ଠେକୁଆକୁ ଦେଖି ଗର୍ଜି ଉଠି କହିଲା—"ତୋର ଏତେ ଡେରି କାହିଁକି ?"

ଠେକୁଆଟି ବାଘର ଗର୍ଜନ ଶୁଣି ଛୁନିଆ । ଭୟରେ ସେ ଥରହର । ଡରି ଡରି କହିଲା "ହଜୁର ! ବାଟରେ ଗୋଟିଏ ବାଘକୁ ଭେଟିଲି । ସେ ଆପଣଙ୍କଠାରୁ ଆହୁରି ବଡ଼ । ସେ ମୋତେ ଅଟକାଇ ଦେଲେ । ସେଥିପାଇଁ ମୋର ଡେରି ହୋଇଗଲା ।"

ବାଘ ଏକଥା ଶୁଣି ରାଗରେ ନିଆଁ । କହିଲା—"କାହିଁ ସେ ବାଘ ? ମତେ ତା ପାଖକୁ ନେଇଚାଲ ।"

ଠେକୁଆଟି ଆଗେ ଆଗେ । ପଛରେ ବାଘ । କୂଅ ପାଖରେ ପହଞ୍ଚିଗଲେ । ଏଥର ଠେକୁଆ କୂଅ ଭିତରେ ଥିବା ପାଣିକୁ ଦେଖାଇ ଦେଲା । ବାଘ ଉଣ୍ଡିଲା କୂଅ ଭିତରକୁ । ପାଣିରେ ଦେଖିଲା ନିଜର ପ୍ରତିବିମ୍ବ । ତାହା ତାହାଠାରୁ ବଡ଼ ଏବଂ ଭୟଙ୍କର । ବାଘର ସବୁଠାରୁ ବଡ଼ବୋଲି ତାର ଗର୍ବ । ସେ ଗର୍ଜନ କଲା । କୂଅଭିତରୁ ତାର ପ୍ରତିଧ୍ୱନି ଆହୁରି ବିକଟାଳ ଶୁଭାଗଲା । ବାଘ ପାଇଁ ଏତିକି ଯଥେଷ୍ଟ । ସେ କି ଆଉ ସମ୍ଭାଳି ହୁଏ ? ବାଘଟି କୂଅ ଭିତରକୁ ଭୁସ୍ କିନେ ଡେଇଁପଡ଼ିଲା ।



# ସୁନା ପୋଖରୀର ଅଦ୍ଭୁତ ଶକ୍ତି

( ଥାରୁ ଲୋକ କଥା )

ଜଣେ ରାଜା ଥିଲେ । ତାଙ୍କର ସାତ ପୁଅ । ବଡ଼ ଛ'ଜଣ ବିବାହିତ । ସାନଟି ବାଡୁଅ ।

ରାଜା ଏବେ ଖୁବ୍ ବୁଢ଼ା । ଆଖିରେ ତାଙ୍କର ଅଚାନ୍ଧା ରୋଗ । ଯନ୍ତ୍ରଣା ଅସହ୍ୟ । ମର୍ମନ୍ତୁଦ । କଷ୍ଟରେ ସେ ଅତିଷ୍ଠ । ଛଟପଟ ହୁଅନ୍ତି । ଯେତେ ଯାହା କଲେ, ରୋଗ ଦମେ ନାହିଁ । ବରଂ ଦିନକୁ ଦିନ ବଢ଼େ । ଅବସ୍ଥା ତାଙ୍କର ଅସମ୍ଭାଳ । ବେଳେବେଳେ ଜୀବନ ହାରିବାକୁ ବସନ୍ତି ।

ଶେଷରେ ରାଜା ଦିନେ ପୁଅମାନଙ୍କୁ ଡାକି କହିଲେ—"ମୋ ଆଖି ମୋତେ ଖୁବ୍ କଷ୍ଟ ଦେଉଛି । ତମେମାନେ ଦେଖୁଛ ଭଲ ନାହିଁ । ଏଥିରୁ ମୋତେ ଯେ ରକ୍ଷା କରିବ, ମୋ ଅନ୍ତେ ସେ ରାଜା ହେବ ।"

ବଡ଼ପୁଅମାନେ ରାଜାଙ୍କ ଆଖି ପାଇଁ ବ୍ୟସ୍ତ ହୁଅନ୍ତି । ସେମାନେ ସିଂହାସନ ପାଇଁ ବ୍ୟାକୁଳ । ରାଜାଙ୍କ କଥା ଶୁଣି ସେମାନେ ଉଚ୍ଛନ୍ନ । ପ୍ରତିଯୋଗିତା ଆରମ୍ଭ ହୋଇଗଲା । ସମସ୍ତେ ଗଲେ ଜଙ୍ଗଲକୁ । ପୁରା ଜଙ୍ଗଲଟା ସେମାନେ ଘାଣ୍ଟି ପକାଇଲେ ସତ; କିନ୍ତୁ ଔଷଧଗଛ ପାଇଲେ ନାହିଁ । ଶେଷକୁ ହତାଶ ହୋଇ ଫେରି ଆସିଲେ ।

ରାଜା ସେମାନଙ୍କୁ ଦେଖି କ୍ଷୁବ୍ଧ । ବିରକ୍ତ । ସେମାନଙ୍କୁ ଅପଦାର୍ଥ ବୋଲି ଭାବିଲେ । ସାନପୁଅ ତ ଯାଇନଥିଲା । ରାଜା ତାକୁ ଡାକି ଔଷଧ ପାଇଁ ପଠାଇଲେ ।

ସାନପୁଅଟି ବୁଦ୍ଧିମାନ୍ । ବାପାଙ୍କ ପାଇଁ ସେ ଖୁବ୍ ବ୍ୟସ୍ତ । ରାଜସିଂହାସନ ପାଇଁ ସେ ଲାଳାୟିତ ନୁହଁ । ରାଜାଙ୍କ ଆଦେଶ ପାଇ ସେ ଘରୁ ନିଜ ଘୋଡ଼ାରେ ବାହାରି ପଡ଼ିଲା । ସାଥିରେ ତାର କିଛି ଟଙ୍କା ଓ ଚଳିବା ମୁତାବକ ଜିନିଷ ।

ସାନପୁଅ ବୁଦ୍ଧିମାନ । ସେ ଜାଣେ, ଔଷଧ ବିଷୟରେ କିଛି ନ ଜାଣି ଜଙ୍ଗଲ ଉଣ୍ଡାଳିବା ଅନର୍ଥକ । ମୂଲ୍ୟହୀନ । କେବଳ ସମୟ ନଷ୍ଟ । ତେଣୁ ଆଗ ରୋଗ ବିଶେଷଜ୍ଞଙ୍କର ଖୋଜିବା ଉଚିତ । ସେ ତାହାକୁ ଚିହ୍ନି ନ ଥାଏ । ସେ ରୋଗ ବିଶେଷଜ୍ଞ ଅନୁସନ୍ଧାନରେ ବାହାରିଲା । ଜଙ୍ଗଲ ଭିତରେ ଘୋଡ଼ାଟି ତାର ଛୁଟି ଚାଲିଥାଏ । ବିଶେଷଜ୍ଞଙ୍କ ବିଷୟରେ ପଚାରି ବୁଝିବା ହେଉଛି ତାର ଲକ୍ଷ୍ୟ । ତେଣୁ ଜନବସତି ଖୋଜୁଥାଏ ।

ବାଟରେ ଯାଉ ଯାଉ ପୋଖରୀଟିଏ ଦେଖିଲା । ତୁଠଟି ତାର ସୁନାରେ ତିଆରି । ତାର ପାଣି ନିର୍ମଳ । କାଚକେନ୍ଦୁ ଝର । ପୋଖରୀଟି ପଦ୍ମ ଫୁଲରେ ପୂର୍ଣ୍ଣ । ଦେଖିଲେ, ମନରେ ଶାନ୍ତି ଓ ଆନନ୍ଦ ଆସେ ।

ରାଜପୁତ୍ର ପୋଖରୀଟି ଦେଖି ଭାରି ଖୁସି । ସେ ଘୋଡ଼ାରୁ ଓହ୍ଲାଇ ସେଠି ବସିପଡ଼ିଲା । ସେଇଠି ଟିକେ ବିଶ୍ରାମ ନେବାକୁ ତାର ଇଚ୍ଛା ।

ପୋଖରୀ ତୁଠରେ ଦୁଇଟି ଠେକୁଆ କଥାବାର୍ତ୍ତା ହେଉଥାଆନ୍ତି । ରାଜପୁତ୍ରର ସେମାନଙ୍କ ଉପରେ ନଜର ପଡ଼ିଲା । ସେ ମଧ୍ୟ ତାଙ୍କ କଥାକୁ କାନେଇଲା । ତାଙ୍କ କଥାବାର୍ତ୍ତାରୁ ଜାଣିଲା ଯେ, ସେ ପୋଖରୀଟିର ଅଦ୍ଭୁତ ଶକ୍ତି । ପୋଖରୀରେ ଫୁଟିଥିବା ପଦ୍ମଫୁଲର

ଔଷଧ ଗୁଣ ମଧ୍ୟ ବହୁତ। ଫୁଲକୁ ରାଜାଙ୍କ ଆଖିରେ ଲଗାଇଦେଲେ ରାଜା ଭଲ ହୋଇଯିବେ। ଏକଥା ଶୁଣି ରାଜପୁଅ ଖୁବ୍ ଖୁସି। ତାର ଆଉ ଆଗକୁ ଯିବାର ଦରକାର ନାହିଁ। ତେଣୁ ସେ ସିଧା ପୋଖରୀରେ ପଶି କନ୍ଥ ପଦ୍ମଫୁଲ ତୋଳିଲା।

ପଦ୍ମଫୁଲତକ ଧରି ରାଜପୁଅ ରାଜ୍ୟ ଅଭିମୁଖେ ଘୋଡ଼ା ଛୁଟାଇଲା। ଉଆସରେ ପହଞ୍ଚି ସିଧା ଯାଇ ରାଜାଙ୍କ ପାଖରେ ହାଜର। ଫୁଲଟିଏ ଅତି ଯତ୍ନରେ ବାପାଙ୍କ ଆଖିରେ ଲଗାଇଦେଲା। କ୍ଷଣିକେ ରାଜା ସୁସ୍ଥ, ଯନ୍ତ୍ରଣା ଆଉ ନାହିଁ। ତାଙ୍କ ଆଖି ଭଲ ହୋଇଗଲା।

ରାଜା ରାଜପୁଅ ଉପରେ ଖୁସି। ସନ୍ତୁଷ୍ଟ। ବଡ଼ ଛ' ଜଣଙ୍କୁ ରାଜ୍ୟରୁ ତଡ଼ିଦେଲେ। ସାନପୁଅକୁ ରାଜଗାଦିରେ ବସାଇଲେ।



# ମାଙ୍କଡ଼ ସୁଯୋଗ ହରାଇଲା

( ଥାରୁ ଲୋକକଥା )

ଭାରତବର୍ଷ ଦେହଲ ଦେଶରେ ଦୁର୍ଭିକ୍ଷ। ପେଟବିକଳରେ ମଣିଷ କ'ଣ, ଜୀବଜନ୍ତୁ ଙ୍କ ସବୁ ଦେଶଛାଡ଼ି ପଳେଇଲେଣି। ଶେଷକୁ ଦେଶର ଶୁଆ ଶାରୀ ବି ରହି ପାରିଲେନାହିଁ। ସେମାନେ ଦେଶ ଛାଡ଼ି ବାହାରିଲେ।

ସାରାଦିନ ଉଡ଼ି ଉଡ଼ି ସେମାନେ ହାଲିଆ। ନଈ କୂଳରେ ଗୋଟିଏ ବଡ଼ ଗଛ। ଡାଳିରେ ତାର ରାତଟି ବିଶ୍ରାମ ନେବାକୁ ସେମାନେ ବସିଲେ। ପାଖ ଗଛରେ ମାଙ୍କଡ଼ଟିଏ ମାଈମାଙ୍କଡ଼ ସାଥିରେ ରହେ।

ରାତ ଅଧିକ ହେଲା, ବସା ତ ନାହିଁ । ତେଣୁ ସେମିତ ବସି ରହିବାକୁ ଶୁଆକୁ କଷ୍ଟ ଲଗିଲା । ତେଣୁ ସେ ଶାରୀକୁ କହିଲା—"କିଛି କଥା କହ । ଗପସପରେ ରାତିଟା ଭଲରେ କଟିଯାଉ ।" ଶାରୀଟି କହିଲା—"ତୁମେ କଥାଟି ଆରମ୍ଭ କର । ତାପରେ ମୁଁ କହିବ ।"

ଶୁଆଟି କହିଲା—"ଏ ଗଛକୁ ଲଗି ଆମ୍ବ ଗଛ । ତା ଉପରେ ମାଙ୍କଡ଼ ଓ ମାଈମାଙ୍କଡ଼ ବସିଛନ୍ତି । ଯଦି ସେମାନେ ତଳେ ପଡ଼ିଯାଆନ୍ତି ଆଉ ମୁଁ ଆଁ କରିଦିଏ, ସେମାନେ ଦୁହେଁ ମଣିଷ ହୋଇଯିବେ ।"

ମାଈମାଙ୍କଡ଼ ସେତେବେଳକୁ ଚେଇଁ ଥାଏ । ଶୁଆର କଥା ସେ ଶୁଣିଗଲା । ଅଣ୍ଡିରା ମାଙ୍କଡ଼କୁ ଘୋର ନିଦ । ମାଈ ମାଙ୍କଡ଼ ତାକୁ ନିଦରୁ ଉଠାଇ ଶୁଆ କଥା କହିବାକୁ ବହୁତ ଚେଷ୍ଟା କଲା । କିନ୍ତୁ ଅଣ୍ଡିରାଟି କଡ ଲେଉଟାଇ ପୁଣି ଶୋଇଲା । ମାଈ ମାଙ୍କଡ଼ କି ଛାଡ଼େ । ସେ ତାକୁ ଉଠେଇବାକୁ ପ୍ରାଣପଣେ ଚେଷ୍ଟା କଲା । ଶେଷକୁ ବହୁ କଷ୍ଟରେ ମାଙ୍କଡ଼ ଉଠି ବସିଲା । ମାଈଟି ଯେମିତି ଶୁଆ କଥା କହୁଛି, ସେ ତ ବିଶ୍ୱାସ କଲା ନାହିଁ । ନିଦରୁ ଉଠିଥିବାରୁ ତାର ରାଗ ବହୁତ । ସେ କହିଲା—"ତୋର ଯଦି ଇଚ୍ଛା ହେଉଛି, ତେଉଁ ପଡ଼ୁନୁ । ମୋତେ ଆଉ ଭୁ ବିରକ୍ତ କରନା ।"

ମାଈ ମାଙ୍କଡ଼ଟିର କିଛି ଉପାୟ ନଥିଲା । ସ୍ୱାମୀ ଅବିଶ୍ୱାସ କରୁଛନ୍ତି । ସେଥିପାଇଁ ସେ ନିର୍ବୋଧ । ମନେମନେ ଭାବିଲା—ସ୍ୱାମୀକୁ ତାର ଅପେକ୍ଷା କରି ଲାଭ ନାହିଁ । ସେ ଶୁଆ କଥା ମାନିବ । ଯାହା ତାର ଭାଗ୍ୟରେ ଥିବ । ସେ ସେଇଠୁ ବସିଥିବା ଡାଳକୁ ଡେଇଁଦେଲା । ନିମିଷକେ ସେ ତଳେ ପଡ଼ିଗଲା । ଶୁଆ ତ ଅନାଇଥିଲା । ଝାଟିକୁ ତାର ଆଁ କରିଦେଲା । ଆଖି ପିଛୁଳାକେ ମାଈ ମାଙ୍କଡ଼ଟି

ବାର ବର୍ଷର ଝିଅ ହୋଇଗଲା । କିନ୍ତୁ ସେତେବେଳକୁ ସୁହସ ଫାଟିଗଲାଣି । ସୂର୍ଯ୍ୟ ଉଇଁବାକୁ ଅଳ୍ପ ଡେରି ।

ମାଙ୍କଡ଼ ନଦ ଲଙ୍ଘିଗଲାଣି । ସେ ମାଈ ମାଙ୍କଡ଼ର ପରିବର୍ତ୍ତନ ଦେଖି ଆଶ୍ଚର୍ଯ୍ୟ । ସେ ଆଉ ଡେରି କଲାନାହିଁ । ନିଜେ ନଦକୁ ଗଡ଼ି ପଡ଼ିଲା । ତାର କୌଣସି ପରିବର୍ତ୍ତନ ହେଲା ନାହିଁ । ସେ ଯେଉଁ ମାଙ୍କଡ଼ ଥିଲା, ସେଇ ମାଙ୍କଡ଼ ରହିଲା । କେବଳ ତଳେ ପଡ଼ି ଦେହ ହାତ ତାର ଦରଜ ।



# ଚତୁର ବାଳକ ଓ ରାକ୍ଷସ

( ଥାରୁ ଲୋକ କଥା )

ଏକଦା ଜଣେ ରାଜା ଥିଲେ । ତାଙ୍କ ପରିବାରଟି ବଡ଼ । ସମସ୍ତେ ପାଚିବାର । ବଳୁଆ । ସେମାନଙ୍କର ଅତ୍ୟାଚାର ଅସହ୍ୟ । ଅପକର୍ମ ଅଶ୍ରାବ୍ୟ । ଭଗବାନ ସହି ପାରିଲେ ନାହିଁ । ଭାବିଲେ— ସେମାନେଙ୍କର ଧ୍ୱଂସ ଏକାନ୍ତ ଆବଶ୍ୟକ । ସେଥିପାଇଁ ରାକ୍ଷସଟିଏ ପଠେଇ ଦେଲେ ।

ରାକ୍ଷସଟି ଭଗବାନଙ୍କ ବଳରେ ବଳୀୟାନ । ସେ ସିଧା ଆସି ଉଆସରେ ହାଜର । ପରିବାରର ଜଣ ଜଣ କରି ମାରି ସେ ଖାଇବାକୁ ଲାଗିଲା । ରାଜା ଆତ୍ମରକ୍ଷା ପାଇଁ ଚେଷ୍ଟା କଲେ । ସେ ସବୁ କିଛି କାମ ଦେଲା ନାହିଁ । ସମସ୍ତେ ଅସହାୟ । ଉପାୟଶୂନ୍ୟ । ଆତ୍ମସମର୍ପଣ ଛଡ଼ା ଉପାୟ ନଥିଲା ।

ରାଣୀ ସେତେବେଳକୁ ଆସନ୍ନପ୍ରସବା । ସେ ତାହାଙ୍କୁ କିଛି କହିଲେ ନାହିଁ । ଉଆସରୁ ଚୁପ୍‌କିନା ଖସି ଚାଲି ଆସିଲେ । ରାକ୍ଷସ ଜାଣିଲେ ପଛରେ ଗୋଡ଼ାଇ ନିଶ୍ଚୟ ଧରିବ । ସେ ଭୟ ବି ତାଙ୍କର ଥାଏ । ତେଣୁ ଆସିଲାବେଳେ ଦୁଆରଟି ଆରପଟେ ବନ୍ଦକରି ତାଲାଟିଏ ପକାଇଦେଲେ । ତାପରେ ସିଧା ତାଙ୍କ ବାପ ଘରକୁ ପଳେଇଗଲେ ।

ରାଣୀ ସମ୍ପୂର୍ଣ୍ଣ ଅସହାୟ । ଏ ଅବସ୍ଥା ଦେଖି ତାଙ୍କ ବାପା ଓ ମା ଭାରି ବ୍ୟସ୍ତ । ରାଣୀ ତାଙ୍କୁ ସବୁକଥା କହିଲେ । କିନ୍ତୁ ରାକ୍ଷସ ଭଗବାନଙ୍କ ବଳରେ ବଳୀୟାନ । ତେଣୁ ତା ବିରୁଦ୍ଧରେ ଯାଇ ହେବ ନାହିଁ । ତଳେ ବି କିଛି କହି ହେବ ନାହିଁ । ସେଥିପାଇଁ କେହି ବାହାରିବାକୁ ସାହାସ କଲେ ନାହିଁ ।

ଯଥାସମୟରେ ରାଣୀଙ୍କର ପୁଅଟିଏ ହେଲା । ତାର ହେତୁ ହେବାଦିନୁ ସେ ଅଜାଘରେ । କେବେକେବେ ମା'କୁ ଏହାର କାରଣ ପଚାରେ । ମା କିନ୍ତୁ ତାର କିଛି ଉତ୍ତର ଦିଏ ନାହିଁ । ବରଂ କଥାଟି ବାଆଁରେଇ ଦିଏ ।

ପୁଅକୁ ଏବେ ନଅ ବର୍ଷ । ଅଜା ଘରେ ରହିବାର କାରଣ ଜାଣିବାକୁ ତାର ଜିଦ୍ । ନ କହିଲେ ସେ କେନାଲକୁ ଡେଇଁ ଆତ୍ମହତ୍ୟା କରିବ । ତାହାହିଁ ତାର ମା'କୁ ଧମକ ।

ପିଲାଟି ଜିଦ୍‌ଖୋର । ଏକଥା ମା'କୁ ବେଶ୍ ଜଣା । ତେଣୁ ବାଧ୍ୟ ହୋଇ କହିଲା—"ପୁଅରେ ! ବାପା ତୋର ଦୁର୍ଦ୍ଦାନ୍ତ ଥିଲେ । ତୁ ସେତେବେଳେ ପେଟରେ । ଆମ ଘରେ ରାକ୍ଷସ ପଶିଲା । ବଂଶ ନିପାତ କରିଦେଲା । ତତେ ବଞ୍ଚାଇବା ପାଇଁ ମୁଁ ପଳେଇ ଆସିଲି । ସେଇ ଦିନୁ ଅଜାଘରେ ରହିଛୁ ।"

ପୁଅଟି କହିଲା—"ଏ କଥା ତୁ ମୋତେ ଆଗରୁ କହିଲୁ ନାହିଁ । ମୁଁ ଜାଣିଥିଲେ ଅସୁରକୁ ବଡ଼ ମାରନ୍ତିଣି ।"

ପୁଅଟି ଆଉ ଡେରି କଲା ନାହିଁ । ରାକ୍ଷସକୁ ମାରିବାକୁ ବାହାରିପଡ଼ିଲା । ମା କିନ୍ତୁ ଅସୁରର ପ୍ରତାପ ଜାଣେ । ତେଣୁ ପୁଅକୁ ଛାଡ଼ିବାକୁ ସେ ଆଦୌ ପ୍ରସ୍ତୁତ ନୁହେଁ । ବହୁତ ନିବର୍ତ୍ତାଇଲା । ଫଳ କିଛି ହେଲାନାହିଁ । ଶେଷରେ ମା ରାଜକୁମାର ପୁଅକୁ ଘରର କାଠ ବଟେଇରେ ଦେଲା । ଦୁଆର ମୁହଁ ତାଲାର ଚାବିଟି ବି ନେଲା ।

ପୁଅର ମନ ତ ଲାଗିଛି । ସେ ସିଧା ଯାଇ ଘରେ ପହଞ୍ଚିଲା । ଦୁଆର ମୁହଁରେ ତାଲା ଏବେ ବି ଝୁଲୁଛି । ତା ଦେଖି ସେ ଆଶ୍ଚର୍ଯ୍ୟ । ତାଲାଟି ଫିଟାଇ ଉଆସରେ ପଶିଲା । ସେଠାରେ ରାକ୍ଷସ ସାଙ୍ଗରେ ତାଙ୍କ ଭେଟ ହେଲା ।

ରାକ୍ଷସ ତାକୁ ଦେଖି ଖୁବ୍ ରାଗିଗଲା । ତାକୁ ଧମକେଇ ପଚାରିଲା—"ତୁ ଏଠାକୁ କାହିଁକି ଆସିଛୁ ? ମୁଁ ତୋତେ ଖାଇବି ।"

ପିଲାଟିର ସାହାସ ଅପୂର୍ବ । ଅସୁରର ଧମକରେ ସେ ଅବି-ଚଳିତ । କିନ୍ତୁ ଅସୁରକୁ ଭଜେଇବା ପାଇଁ ସେ ଆକୁଳ ମିନତି ହୋଇ କହିଲା—"ମୁଁ ଛୋଟ ପିଲାଟିଏ । ମତେ ଖାଇଲେ କ'ଣ ତମର ପେଟ ପୂରିବ ? ତମେ ମୋତେ ଖାଅ ନାହିଁ । ମୁଁ ତମକୁ ବଢ଼ିଆ ଖାଇବା ଜିନିଷ ରାନ୍ଧି ଦେବି ।"

ପିଲାଟିର ବ୍ୟବହାର ଭଦ୍ର । କଥାବାର୍ତ୍ତା ମଧୁର । ଏଥିରେ ରାକ୍ଷସ ମୁଗ୍ଧ । ତେଣୁ ତାକୁ ଅଭୟ ଦେଲା । ଏହାର ସୁବିଧା ନେଇ ପୁଅଟି କହିଲା—"ସେ ଏକୁଟିଆ । ରହିବାକୁ ତାର ସ୍ଥାନ ନାହିଁ । କହିଲେ ସେ ସେଠି ରହିଯିବ ।"

ରାକ୍ଷସର ପିଲାଟି ପ୍ରତି ମମତା ବଢ଼ୁଚି । ସହାନୁଭୂତି ବି ହେଲାଣି । ତେଣୁ ତାକୁ ଉଆସରେ ରହିବାକୁ ଅନୁମତି ଦେଲା । ସେଇଦିନୁ ପିଲାଟି ଉଆସରେ ରହେ । ରାକ୍ଷସକୁ ବଢ଼ିଆ ବଢ଼ିଆ ଜିନିଷ ରାନ୍ଧିକରି ଖୁଆଏ ।

ରାକ୍ଷସର ଗତିବିଧି ଉପରେ ପିଲାଟିର ତୀକ୍ଷ୍ଣ ନଜର । ସେ ଦେଖେ, ରାକ୍ଷସ ସବୁଦିନେ କୁଆଡ଼େ ଯାଏ । ବହୁତ ଡେରିରେ ଫେରେ । ଦିନେ ପିଲାଟି ପଚାରିଲା—"ତମେ ସବୁଦିନେ କୁଆଡ଼େ ଯାଉଛ ?"

"ମୁଁ ସବୁଦିନ ଭଗବାନଙ୍କ ଦରବାର ପ୍ରଦକ୍ଷିଣ କରିବାକୁ ଯାଏ ।" ଏଇଆ ହିଁ ଥିଲା ରାକ୍ଷସର ଉତ୍ତର ।

ପିଲାଟି କହିଲା—"ତମେ ତ ଭଗବାନଙ୍କ ପାଖକୁ ଯାଉଛ । ମୋ ପରମାୟୁ ତାଙ୍କଠାରୁ ଟିକେ ବୁଝି ଆସିବ ।"

ସବୁଦିନ ପରି ସେଦିନ ବି ରାକ୍ଷସ ଭଗବାନଙ୍କ ନିକଟକୁ ଗଲା । ତାଙ୍କ ଦରବାର ପ୍ରଦକ୍ଷିଣ କଲାପରେ ସେଠି ସେ ଅପେକ୍ଷା କରି ରହିଲା । ଭଗବାନଙ୍କୁ ଏକୁଟିଆ ପାଇ ପିଲାଟିର ପରମାୟୁ ପଚାରିଲା ।

ଭଗବାନ ଟିକେ ହସି, ସତୁରି ବର୍ଷ ବୋଲି କହିଲେ । ରାକ୍ଷସ ଘରକୁ ଫେରି ଏକଥା ପିଲାକୁ ଜଣାଇଦେଲା ।

ପିଲାଟି ମନରେ ଅଶେଷ ଆନନ୍ଦ । ରାକ୍ଷସ ଯେ ତାକୁ ଆଉ ମାରିପାରିବ ନାହିଁ, ଏ ବିଷୟରେ ସେ ଦୃଢ଼ ।

ତା ପରଦିନ ସେ ଆଉ ରହିଲା ନାହିଁ । ଭଗବାନଙ୍କ ଦରବାରରୁ ରାକ୍ଷସ ଡେରିରେ ଫେରିଲା । ତାକୁ ସେତେବେଳକୁ ଖୁବ୍ ଭୋକ ।

ସେ ପିଲାଟିକୁ ଶୀଘ୍ର ବାଡ଼ିବାକୁ କହିଲା ।

ପିଲାଟି କହିଲା ଯେ, ସେ ଆଜି କାହାକୁ ବାନ୍ଧିବେ ନାହିଁ । ରାକ୍ଷସ ତା ଶୁଣି ରାଗିଗଲା । ତାକୁ ଖାଇବ ବୋଲି ଧାଇଁଲା ।

ପିଲାଟି ହାତରେ ଖଣ୍ଡେ ଜଳନ୍ତା କାଠ । ସେ ରାକ୍ଷସକୁ ଧମକାଇ କହିଲା—"ମୋ ପରମାୟୁ ସତୁରି ବର୍ଷ । ତୁ ମତେ ମାରି ପାରିବୁ ନାହିଁ ।"

ତାପରେ ସେ ରାକ୍ଷସକୁ ଆକ୍ରମଣ କରିବାକୁ ଲାଗିଲା । ତାକୁ ଏପରି ଅବସ୍ଥାରେ ଦେଖି ରାକ୍ଷସ ଡରିଗଲା ଭାବିଲା—ଭଗବାନଙ୍କର ପିଲାଟି ପ୍ରତି ଦୟା ଅଛି । ତେଣୁ ତାକୁ ସେ ମାରିପାରିବ ନାହିଁ । ବରଂ ଯୁଦ୍ଧ କଲେ, ପିଲାଟି ତାକୁ ମାରି ଦେଇପାରେ । ତେଣୁ ସେ ଯୁଦ୍ଧ ନକରି ପଳେଇଲା ।

ଏଥର ପୁଅଟି ନିର୍ଭୟ । ମା'କୁ ଅଜାଘରୁ ସେ ଆଣିଲା । ମା' ପୁଅ ଉଭୟେ ନିଜ ଘରେ ଆରାମରେ ରହିଲେ ।



# ଅସଲ ଗପ

( ଥାରୁ ଲୋକ କଥା )

ଏକଦା ଜଣେ ରାଜା ଥିଲେ । ଗପ ଶୁଣିବାକୁ ସେ ପାଗଳ । ଯେତେ ଗପ ଶୁଣିଲେ, ମନ ତାଙ୍କର ବୋଧ ହୁଏ ନାହିଁ । ଆହୁରି ଗପ ଶୁଣିବାକୁ ତାଙ୍କର ଇଚ୍ଛା । ତାଙ୍କର ଏଇ ପ୍ରକୃତି ଯୋଗୁ ରାଜ କାର୍ଯ୍ୟରେ ବାଧାପ୍ରାପ୍ତ ହେଲା । ଏ ଖୋଇ ଛୁଡ଼ିବା ପାଇଁ ସେ

ଶାନ୍ତ । ଉପାୟଟି ବାହାରକଲେ । ତା ପରେ ପରେ ସେ ଘୋଷଣା କଲେ, ଯେ ଗପ କହି ତାଙ୍କୁ ହାଲିଆ କରିଦେବ, ତାକୁ ସେ ରାଜ୍ୟରୁ ଅଧେ ଦେବେ । କିନ୍ତୁ ଯଦି ହାଲିଆ କରିପାରିବ ନାହିଁ, ତାକୁ ଜେଲ୍‌ଦଣ୍ଡ ମିଳିବ ।

ଗପ କହିବାବାଲା ତ ରାଜ୍ୟରେ ଅଭାବ ନାହାନ୍ତି । ସମସ୍ତେ ଭାବିଲେ—ଏ କଥା ଭାରି ସହଜ । ଗପ କହି ରାଜାଙ୍କୁ ହାଲିଆ କରିଦେଲେ, ଅଧେ ରାଜ୍ୟ ମିଳିଯିବ । ତେଣୁ ସମସ୍ତେ ଧାଇଁଲେ ଗପ କହିବାକୁ । ପୁଣି ସଭାଆଗରେ । ରାଜ ଉଆସରେ ଗପ କହିଲାବାଲାଙ୍କର ଗହଳି । ସମସ୍ତେ ଆଗ ଗପ କହିବେ ବୋଲି ଚିତ୍କାର କଲେ । ଶେଷକୁ ଗୁଳା ପଡ଼ିଲା । ସେଇ ଅନୁସାରେ ଗପ କୁହା ଆରମ୍ଭ ହେଲା ।

କାହାର ଗପ କୁହା ଘଣ୍ଟେ ଗଲା ତ ଆଉ କାହାର ଦି ଦିନ । କାହାର ବା ସପ୍ତାହଟିଏ ହୋଇଗଲା । ଜଣେ ଜଣେ ପନ୍ଦର ଦିନ ଆଉ ମାସେ ବି ନେଲେ । ଗପ ସରି ଯାଉଥାଏ । ରାଜା କିନ୍ତୁ ହାଲିଆ ହୁଅନ୍ତି ନାହିଁ । ବରଂ ସେ ଗପ ଶୁଣିବାକୁ ଆହୁରି ଆଗ୍ରହୀ । ଗପ କହିଲା ବାଲାଙ୍କର ଗପ ସରିଗଲା । ମାତ୍ର ସେମାନେ ରାଜ୍ୟତ ପାଆନ୍ତି ନାହିଁ, ବରଂ ଜେଲକୁ ଚାଲିଯାଆନ୍ତି । କିଛିଦିନ ପରେ ଦେଖାଗଲା ଗପ କହିଲାବାଲାଙ୍କୁ ନେଇ ଜେଲ ଭରପୂର । ଗପ କହିଲାବାଲା ଡରିଲେଣି । ଆଉ କେହି ଲୋକ ଗପ କହିବାକୁ ଆସୁନାହାନ୍ତି । ଯଦି ଆସୁଛନ୍ତି କାଁ ଭାଁ ହୋଇ । ସେମାନଙ୍କର ଭୟ, ଗପ ସରିଯିବ । ରାଜ୍ୟ ତ ମିଳିବ ନାହିଁ, ଜେଲକୁ ଯିବା ସାର ହେବ ।

ଏଇ ଅବସରରେ ବ୍ରାହ୍ମଣଟିଏ ରାଜ ଦରବାରକୁ ଆସିଲା । ସେ ଭାରି ଗରିବ । ବେଶଭୂଷାରୁ ତାହା ପରିସ୍ଫୁଟ । ତାହା ଦେଖି

ମନ୍ତ୍ରୀଙ୍କର ବଯ୍ସ ହେଲା । ବ୍ରାହ୍ମଣଟିକୁ ସେ କହିଲେ—"ବହୁ ପଣ୍ଡିତ ଗପ କହି ରାଜାଙ୍କୁ ହାଲିଆ କରିବାକୁ ଆସିଛନ୍ତି । ପାରି ନାହାନ୍ତି । ବରଂ ସେମାନେ ଆଜି ଜେଲରେ ! ତୁମେ ଆଉ ଦୁଃସାହସ କର ନାହିଁ । ଫେରିଯାଅ ।"

ବ୍ରାହ୍ମଣଟି ତା କଥାରେ ଅଟଳ । ଦୃଢ଼ । ମନ୍ତ୍ରୀଙ୍କ କଥା ଗ୍ରହଣ କଲାନାହିଁ । ରାଜାଙ୍କୁ ଗପ କହିବା ପାଇଁ ତାର ଏଡ଼ା ଜିଦ୍ । ଶେଷକୁ ତା କଥା ରହିଲା । ମନ୍ତ୍ରୀ ରାଜି ହୋଇ ତାକୁ ରାଜାଙ୍କ ପାଖକୁ ନେଇଗଲେ ।

ରାଜା ତ ଗପ ଶୁଣିବାକୁ ଆଗ୍ରହୀ । ବ୍ରାହ୍ମଣକୁ ସାଥି ସାଙ୍ଗେ ଗପ ଆରମ୍ଭ କରିବାକୁ କହିଲେ । ବ୍ରାହ୍ମଣ କହିବାକୁ ଲାଗିଲା—

"ଥରେ ଜଣେ ରାଜାଥିଲେ । ସେ ତାଙ୍କ ପ୍ରଜାମାନଙ୍କୁ ପୁଅଠାରୁ ବଳି ସ୍ନେହ କରୁଥିଲେ । ପ୍ରଜାଙ୍କ ସୁଖ ହିଁ ତାଙ୍କର ସୁଖ । ପ୍ରଜାଙ୍କର ଦୁଃଖ ହିଁ ତାଙ୍କର ଦୁଃଖ । ସବୁବେଳେ ସେ ପ୍ରଜାଙ୍କ ପାଇଁ ବ୍ୟସ୍ତ । ସାରା ଦୁନିଆ ଖୋଜି ଆସିବ ଏମିତି ରାଜାଟିଏ ପାଇବ ନାହିଁ । ପ୍ରଜାଙ୍କର ଭବିଷ୍ୟତ ନେଇ ସେ ଚିନ୍ତିତ । ଏମିତିକି ଆଖିକୁ ତାଙ୍କର ନିଦ ହୁଏ ନାହିଁ । ଥରେ ସେ ଭାବିଲେ, ପାଣିକ ଭଲ ଅଛି ବୋଲି ସବୁ ଚଳି ଯାଉଛି । ଯଦି ଦୁର୍ଭିକ୍ଷ ପଡ଼େ, ପ୍ରଜାମାନେ କ'ଣ କରିବେ ? ଖାଲି ପୋକମାଛି ଭଳି ମରିବେ ସିନା । ତାଙ୍କ ଦେହ ଶିହରି ଉଠିଲା । ତେଣୁ କିଛି ଉପାୟ କରିବାକୁ ହେବ ବୋଲି ସେ ଭାବିଲେ । ସେଥିପାଇଁ ମନ୍ତ୍ରୀଙ୍କ ପରାମର୍ଶ ଲୋଡ଼ିଲେ ।

ମନ୍ତ୍ରୀ ତ ବିଚକ୍ଷଣ । ସେ ରାଜାଙ୍କ କଥା ଶୁଣି କହିଲେ—"ମହାରାଜ ! ଖାଦ୍ୟଶସ୍ୟ ମହଜୁଦ ଥିଲେ, ଦୁର୍ଭିକ୍ଷ ଡାଉ ବାଧିବ ନାହିଁ । ସେଥିପାଇଁ ଆମର ଗୋଦାମ ଘରଟିଏ ଦରକାର । ଖାଦ୍ୟ

ଶସ୍ୟ ସଂଗ୍ରହ କରି ସେଠାରେ ରଖିଦେବା । ଦୁର୍ଭିକ୍ଷପଡ଼ିଲେ ଲୋକଙ୍କୁ ଖାଦ୍ୟଶସ୍ୟ ଯୋଗାଇ ଦିଆଯିବ ।

ରାଜା ପରାମର୍ଶ ଗ୍ରହଣ କଲେ । ବିରାଟ ଗୋଦାମ ଘର ତିଆରି ହେଲା । ଖୁବ୍ ବଡ଼ । ଆଖି ପାଏ ନାହିଁ । ରାଜ୍ୟର ସମସ୍ତ ପ୍ରଜାଙ୍କର ପାଞ୍ଚ ବର୍ଷର ଖାଦ୍ୟ ସେଠି ମହଜୁଦର ଆୟୋଜନ । ସୁରକ୍ଷା ଏମିତି ଭାବରେ ହେବ ଯେ ଦୁଆର ନ ଖୋଲିଲେ ପଶିହେବ ନାହିଁ କି କେହି କିଛି ନେଇ ପାରିବେ ନାହିଁ । ସୁରକ୍ଷା ପାଇଁ ଚୌକିଦାରଙ୍କ ଘର । ସେମାନେ ଗୋଦାମ ଜଗିବେ । କିନ୍ତୁ ଗୁଡ଼ ପାଖରେ କଣାଟିଏ ରହିଗଲା, ଗୋଟିଏ ଚଟେଇ ଗଳିଲା ଭଳି । ଏ କଥା କାହା ନଜରକୁ ଆସିଲା ନାହିଁ ।

ଆଦେଶ ଅନୁସାରେ ଶସ୍ୟ ଅଣାଗଲା । ଗୋଦାମ ତ ଖୁବ୍ ବଡ଼ । ନିଜ ରାଜ୍ୟରୁ ସଂଗ୍ରହ ଖାଦ୍ୟ କେଉଁ କଣରେ ପଡ଼ିଲା । ବାହାର ରାଜ୍ୟରୁ ଖାଦ୍ୟ ବି ଆସିଲା । ହଜାର ହଜାର ଯାନ ବାହାନ । କାହିଁ ନା କେତେ ଲୋକ । ଦିନ ରାତି ଲାଗିଥାନ୍ତି । ଶେଷକୁ ଭଣ୍ଡାର ପୂର୍ଣ୍ଣ ହେଲା । ରାଜା ଏଥର ଆଶ୍ୱସ୍ତ ।

କ'ଣ ହେଲା ନା, ଦିନେ ଚଟେଇଟିଏ ସେଇବାଟେ ଉଡ଼ି ଯାଉଥିଲା । ଭଣ୍ଡାର ଘର ଛାତ ଉପରେ ବସି ପଡ଼ିଲା । ଚଟେଇ ଆଖି ଭାରି ତୀକ୍ଷ୍ଣ । ପାଖରେ ଥିବା କଣାଟି ତା ଆଖିରୁ ବାଦ ଗଲା ନାହିଁ । ସେଇବାଟେ ସେ ଗୋଦାମ ଘରେ ପଶିଲା । ଶସ୍ୟର ଭଣ୍ଡାର ଦେଖି ସେ ମହା ଖୁସି । କିଛି ଖାଇଲା । ଆଉ ଶସ୍ୟଟିଏ ଧରି ବାହାରି ଆସିଲା । ସେ ସ୍ୱାର୍ଥପର ନୁହେଁ । ସମସ୍ତେ ଖାଇ ଭଲରେ ରହନ୍ତୁ, ତାହା ତାର ଇଚ୍ଛା । ସେଥିପାଇଁ ସାଙ୍ଗସାଥିଙ୍କୁ ଡାକି ଆଣିଲା । କହିଲା ପରିଶ୍ରମ ଦରକାର ନାହିଁ । ଖାଲି ଶସ୍ୟ

ବୋଝ ନେବା କଥା । ଯେତେ ତମ ଇଚ୍ଛା ।

ଅଳ୍ପଦିନ ପରେ ସେଠି ରାଇଜ ସାରା ଚଢ଼େଇ ରୁଣ୍ଡ । ତା ଭିତରୁ ଗୋଟିଏ ଚଢ଼େଇ କଣାବାଟେ ଗୋଦାମ ଘରକୁ ଗଲା । ଶସ୍ୟଟିଏ ଧରି ବାହାରି ଆସିଲା । ପୁଣି ଫୁର୍ କରନେ ଉଡ଼ିଗଲା । ତାପରେ ଆଉ ଗୋଟିଏ ଚଢ଼େଇ ପଶିଲା । ସେ ବି ଅଣ୍ଟରେ ଶସ୍ୟ-ଟିଏ ଧରି ପଦାକୁ ଆସି ଫୁର୍ କରନେ ଉଡ଼ିଗଲା । ତାପରେ ଆଉ ଗୋଟିଏ ଚଢ଼େଇ ସେଇ କଣାବାଟେ ଗୋଦାମ ଘରେ ପଶିଲା । ଶସ୍ୟଟିଏ ଧରି ପଦାକୁ ଆସି ଫୁର୍ କରନେ ଉଡ଼ିଗଲା । ଏଇଆ ବ୍ରାହ୍ମଣଟି ଦୁଇଦିନ ଧରି ଖାଲି କହୁଥିଲା—"ଚଢ଼େଇଟି ସେଇକଣା ବାଟେ ଗୋଦାମ ଘରେ ପଶିଲା, ଶସ୍ୟଟିଏ ଧରି ପଦାକୁ ଆସି ଫୁର୍ କରନେ ଉଡ଼ିଗଲା ।" ବାରମ୍ବାର ଶୁଣି ଶୁଣି ରାଜା ଅତିଷ୍ଠ । ହରକତ । ରାଜା ରାଗିଯାଇ ପଚାରିଲେ—"ତାପରେ ?"

ପଣ୍ଡିତ କହିଲା—"ଆଉ ଗୋଟିଏ ଚଢ଼େଇ ଗୋଦାମଘର କଣା ବାଟେ ପଶିଲା । ଶସ୍ୟଟିଏ ଧରି ପଦାକୁ ଆସି ଫୁର୍ କରନେ ଉଡ଼ିଗଲା ।"

ରାଜା ସେତେବେଳକୁ ଧୈର୍ଯ୍ୟ ହରାଇ ସାରିଲେଣି ପଚାରିଲେ—"କେତେଦିନ ଏମିତି ଚଢ଼େଇଟି ପଶିବ, ଆଉ ଶସ୍ୟଟି ଧରି ପଦାକୁ ଆସିବ ତାପରେ ଉଡ଼ି ଚାଲିଯିବ ।"

ହାତ ଯୋଡ଼ି ପଣ୍ଡିତଟି କହିଲା "ମହାରାଜ ! ଏବେ ବି ଅଗଣିତ ପକ୍ଷୀ ଠାକ ବସିଛନ୍ତି, ଶସ୍ୟ ନେବା ଆଶାରେ । ଅଳ୍ପ କେତୋଟି ପକ୍ଷୀ ମାତ୍ର ଯାଇଛନ୍ତି । ସେମାନେ ବି ଶସ୍ୟଟି ଖାଇ ଫେରି ଆସି ପୁଣି ସେଇଠି ରୁଣ୍ଡ ହେଲେଣି । ଗୋଦାମରେ ତ ଖାଦ୍ୟ ଶସ୍ୟର ଅସରନ୍ତି ଭଣ୍ଡାର । ସରିଲେ ସିନା ପକ୍ଷୀମାନେ ଉଡ଼ିଯିବେ ।

କେତେ ଧନ ଏଇ ଶସ୍ୟ ପକ୍ଷୀମାନେ ଯେ ବୋହୁବେ ତା କଏ କହିବ । ସବୁ ଶସ୍ୟ ବୁହାସରିଲେ, ଗପଟା କେଉଁ ମୋଡ଼ ନେବ ମୁଁ ସିନା କହି ପାରିବି । ଏତେ ଆଗରୁ ତ କହି ହେବ ନାହିଁ ।”

ରାଜା କହିଲେ—“ତମ କଥାନୁସାରେ ମୋ ଜୀବଦଶାରେ ଏ ଶସ୍ୟ ତ ବୁହା ନ ସରିପାରେ ।”

“ହୋଇପାରେ ହଜୁର” ଏହା ଥିଲା ପଣ୍ଡିତଙ୍କ ଉତ୍ତର ।

ରଜା ଏଥର ହାଲିଆ । ତାଙ୍କ କଥା ସେ ରଖିଲେ । ମନ୍ତ୍ରୀଙ୍କୁ ଡାକି ପଣ୍ଡିତଙ୍କୁ ରାଜ୍ୟରୁ ଅଧେ ଦେଇଦେଲେ ।



# ବାଘ ଓ ସିପାହୀ

( ଥାରୁ ଲୋକ କଥା )

ପୁରୁଣା ଜଙ୍ଗଲ । ଚାରିପଟେ ଜନବସତି । ତଥାପି ସେଠି ବାଘଟିଏ ରହେ । ସେ ଲୋକଙ୍କୁ ବେଶ୍ ହଟହଟା କରେ । ଜଙ୍ଗଲ ଭିତରେ ଘରଟିଏ ଅଛି । ଥରେ ଜଣେ ସିପାହୀ ବାଘକୁ ଘଉଡ଼େଇ ନେଇ ସେ ଘରେ ପୂରେଇ ଦେଲା । ବାହାରୁ ବନ୍ଦ କରି ଚାଲିଗଲା । ବାଘଟି ଅସହାୟ ଅବସ୍ଥାରେ ସେ ଘରେ ପଡ଼ିଥାଏ ।

ସେହିବାଟେ ଆଜି ଜଣେ ସିପାହୀ ଯାଉଥିଲା । ବାଘଟି ତାକୁ ଦେଖି ବିକଳ ହୋଇ କହିଲା “ମୁଁ କିଛି ଖାଇନାହିଁ । ଖାଡ଼ା ଖାଡ଼ା ଉପାସ । ମୋତେ ଟିକିଏ ଦୟାକରି । ଖୋଲିଦିଅ ।”

ସିପାହୀଟି କହିଲା—"ତୁ ତ ହେଉଛୁ ଅଛୁ। ତୋତେ ଖୋଲି-ଦେଲେ, ତୁ ମୋତେ ଖାଇଦେବୁ।"

ବାଘଟି କହିଲା—"ଅସମ୍ଭବ। ମୁଁ ଭଗବାନଙ୍କ ନାଁରେ ଶପଥ ନେଉଛି। ତୁ ମୋତେ ଖୋଲିଦେଲେ ମୁଁ ତତେ ଖାଇବି ନାହିଁ।"

ତାପରେ ସିପାହୀଟି ଘରର ଦରଜା ଖୋଲିଦେଲା। ବାଘଟି ମନ ଆନନ୍ଦରେ ଖୁବ୍ ନାଚିଲା, କିନ୍ତୁ ସମସ୍ତ ଧନ। ତାପରେ ସେ ସିପାହୀକୁ କହିଲା—"ମୁଁ ବାଲିଆ, ଭୋକିଲା ବି। ଶିକାର ଖୋଜି ଯିବାକୁ ଦେହ ଚଳୁନାହିଁ। ପାଖରେ ତୁ ଅଛୁ। ମୁଁ ତତେ ଖାଇବି।"

ଏକଥା ଶୁଣି ସିପାହୀଟି ଆଶ୍ଚର୍ଯ୍ୟ। ବିସ୍ମିତ। ସେ କହିଲା—"ତୁ କଥା ଦେଇ ରଖିଲୁ ନାହିଁ। ଏଠି ଝଗଡ଼ା କରି କିଛି ଲାଭ ନାହିଁ। ଚାଲ ଯିବା। ତିନୋଟି ପଞ୍ଚାୟତ କରିବା। ତାଙ୍କ ନିଷ୍ପତ୍ତି ମାନିବା।" ଏଥିରେ ବାଘ ରାଜି।

ପ୍ରଥମେ ସେମାନେ ଗୋଟିଏ ଗଛ ପାଖକୁ ଗଲେ। ସିପାହୀଟି କହିଲା—"ବାଘ ଗୋଟିଏ ଘରେ ବନ୍ଦୀ ଥିଲା। ସେ ମୋର କ୍ଷତି କରିବ ନାହିଁ ବୋଲି ପ୍ରତିଶ୍ରୁତି ଦେବାରୁ ତାକୁ ମୁଁ ଖୋଲି ଦେଲି। ଖଲାସ ହେଲା ପରେ ସେ ତା କଥା ରଖୁନାହିଁ। ମତେ ଖାଇବାକୁ କହୁଛି। ତମକୁ ଆମେ ପଞ୍ଚାୟତ ମାନିଲୁ। ତମେ ନିଷ୍ପତ୍ତି କରିଦିଅ।"

ଗଛଟି କହିଲା—"ବାଘ କିଛି ଭୁଲ କହୁନାହିଁ। ବାଘ ଯାହା କହୁଛି, ସେଇଟା ହେଲା ମଣିଷର ନ୍ୟାୟ। ମୋ ନିଜ କଥା ଦେଖ। ମୋ ଦେହରେ ଫୁଲ ଫୁଟେ। ଫଳ ଧରେ। ସେ ସବୁକୁ ମଣିଷ ନିଏ। ମୋ ଦେହରେ ଝଙ୍କାଳିଆ ପତର ଛାଇ ଆରାମଦାୟକ। ମଣିଷ ସେଠି ବିଶ୍ରାମ ନିଏ। ମୋ ଡାଳ ହାଣେ। ମୋତେ ଖଣ୍ଡ କରେ। ଏହାହିଁ ମଣିଷର ନ୍ୟାୟ। ବାଘ ଭୁଲ କଣ କହୁଛି?"

ଏ ନିଷ୍ପତ୍ତି ଶୁଣିସାରିବା ପରେ ସେମାନେ ଦ୍ୱିତୀୟ ପଞ୍ଚାୟତକୁ ଚାଲିଲେ । ବାଟରେ ଗୋଟିଏ କୁକୁରକୁ ଭେଟି ମଧ୍ୟସ୍ଥ ମାନିଲେ । କୁକୁରଟି କହିଲା—"ମୁଁ ଛୋଟ ଥିଲାବେଳେ, ମଣିଷ ମୋତେ ଖୁବ୍ ଆଦର କରୁଥିଲା ! ମୋ ପେଟ ତ ସେତେବେଳେ ଖୁବ୍ ଛୋଟ । ଛଟାଏ ଖାଦ୍ୟ ମୋ ପାଇଁ ଯଥେଷ୍ଟ । ସେତେ ଖାଦ୍ୟ ସେତେବେଳେ ମୋ ପାଖେ ଥୁଆ ହେଉଥିଲା । ବଡ଼ ହେଲା ପରେ, ମୋର ପେଟରେ ଖାଦ୍ୟ ଦରକାର ! କିନ୍ତୁ ମତେ ପାଏ ଖାଦ୍ୟ ଦିଆ ହେଉଛି । ମୁଁ ଆନନ୍ଦରେ ଲାଙ୍ଗୁଡ଼ି ହଲାଇଲେ, ମାଲିକଠୁ ଗାଳି ଖାଏ ! ଏମିତି କି ଘରୁ ତଡ଼ି ଦେବାର ଧମକ ବି ମିଳୁଛି । ସେ ଦୃଷ୍ଟିରୁ ବାଘର ନିଷ୍ପତ୍ତି ଭୁଲ୍ ବୋଲି କହିହେବ ନାହିଁ ।"

ଦୁଇଟି ନିଷ୍ପତ୍ତି ବାଘର ସପକ୍ଷରେ । ବାଘ ଟିକିଏ ମଣିଷ ଆଡ଼କୁ ଅନାଇଲା । ମଣିଷ ଅବିଚଳିତ ! ସେ କହିଲା ରହ ତୃତୀୟ ପଞ୍ଚାୟତ ସରୁ ।" ନିଷ୍ପତ୍ତିପାଇଁ ସେମାନେ ଆଗକୁ ଚାଲିଲେ । ବାଟରେ ବିଲୁଆ ସାଙ୍ଗେ ଭେଟ ହେଲା ।

ଝିପାମ୍ପିଟି ତାର ସମସ୍ତ କଥା କହିବାକୁ ଆରମ୍ଭ କଲା । ବିଲୁଆଟି କହିଲା---"ତମେମାନେ ଟିକେ ଦୂରେଇ ରହ । ଯାହା କହିବାର କଥା ସେଇଠୁ କୁହ ।"

ସେଇ ଦୂରରୁ ଝିପାମ୍ପିଟି ଟିକିନିଖି କରି ସମସ୍ତ କଥା କହିଲା ।

ବିଲୁଆଟି କହିଲା—"ନିଜ ଆଖିରେ ଘଟଣାଟି ନ ଦେଖିଲେ, ନିଷ୍ପତ୍ତି ଦେବା କଷ୍ଟ । ତେଣୁ କାହାର ଭାବରେ ତମେ ବାଘକୁ ଖଲାସ କଲ, ନ ଦେଖିଲେ ମୁଁ ନିଷ୍ପତ୍ତି କରି ପାରିବି ନାହିଁ । ଚାଲ, ସେଠାକୁ ଯିବା ।"

ତିନିଜଣ ଯାକ ସାଥି ହୋଇ ସେ ଘର ନିକଟକୁ ଗଲେ ।

ଏ ନିଷ୍ପତ୍ତି ଶୁଣିସାରିବା ପରେ ସେମାନେ ଦ୍ୱିତୀୟ ପଞ୍ଚାୟତକୁ ଚାଲିଲେ । ବାଟରେ ଗୋଟିଏ କୁକୁରକୁ ଭେଟି ମଧ୍ୟସ୍ଥ ମାନିଲେ । କୁକୁରଟି କହିଲା—"ମୁଁ ଶ୍ରେଷ୍ଠ ଥିଲାବେଳେ, ମଣିଷ ମୋତେ ଖୁବ୍ ଆଦର କରୁଥିଲା । ମୋ ପେଟ ତ ସେତେବେଳେ ଖୁବ୍ ଶ୍ରେଷ୍ଠ । ତାଏ ଖାଦ୍ୟ ମୋ ପାଇଁ ଯଥେଷ୍ଟ । ସେତେ ଖାଦ୍ୟ ସେତେବେଳେ ମୋ ପାଖେ ଥୁଆ ହେଉଥିଲା । ବଡ଼ ହେଲା ପରେ, ମୋର ସେତେ ଖାଦ୍ୟ ଦରକାର ! କିନ୍ତୁ ମତେ ପାଏ ଖାଦ୍ୟ ଦିଆ ହେଉଛି । ମୁଁ ଆନନ୍ଦରେ ଲାଙ୍ଗୁଡ଼ି ହଲାଇଲେ, ମାଲିକଠୁ ଗାଳି ଖାଏ ! ଏମିତି କି ଘରୁ ତଡ଼ି ଦେବାର ଧମକ ବି ମିଳୁଛି । ସେ ଦୃଷ୍ଟିରୁ ବାଘର ନିଷ୍ପତ୍ତି ଭୁଲ୍ ବୋଲି କହିହେବ ନାହିଁ ।"

ଦୁଇଟି ନିଷ୍ପତ୍ତି ବାଘର ସପକ୍ଷରେ । ବାଘ ଟିକିଏ ମଣିଷ ଆଡ଼କୁ ଅନାଇଲା । ମଣିଷ ଅବିଚଳିତ ! ସେ କହିଲା ରହ ତୃତୀୟ ପଞ୍ଚାୟତ ସରୁ ।" ନିଷ୍ପତ୍ତି ପାଇଁ ସେମାନେ ଆଗକୁ ଚାଲିଲେ । ବାଟରେ ବିଲୁଆ ସାଙ୍ଗେ ଭେଟ ହେଲା ।

ଝିପାଗ୍ରିଟି ତାର ସମସ୍ତ କଥା କହିବାକୁ ଆରମ୍ଭ କଲା । ବିଲୁଆଟି କହିଲା---"ତମେମାନେ ଟିକେ ଦୂରେଇ ରହ । ଯାହା କହିବାର କଥା ସେଇଠୁ କୁହ ।"

ସେଇ ଦୂରରୁ ଝିପାଗ୍ରିଟି ଟିକିନିଖି କରି ସମସ୍ତ କଥା କହିଲା ।

ବିଲୁଆଟି କହିଲା—"ନିଜ ଆଖିରେ ଘଟଣାଟି ନ ଦେଖିଲେ, ନିଷ୍ପତ୍ତି ଦେବା କଷ୍ଟ । ତେଣୁ କିପରି ଭାବରେ ତମେ ବାଘକୁ ଖଲାସ କଲ, ନ ଦେଖିଲେ ମୁଁ ନିଷ୍ପତ୍ତି କରି ପାରିବି ନାହିଁ । ଚାଲ, ସେଠାକୁ ଯିବା ।"

ତିନିଜଣ ଯାକ ସାଥି ହୋଇ ସେ ଘର ନିକଟକୁ ଗଲେ ।

ସେଠି ପହଞ୍ଚି ଭାଲୁଆ କହିଲା—"ବାଘ ମାମୁଁ କପଟ ଏଇ ଘରେ ବନ୍ଦୀଥିଲେ, ମତେ ଦେଖାଇ ଦିଅ।"

ଘରଟି ଖୋଲାଥିଲା। ବାଘଟି ଧୀରେ ଧୀରେ ସେ ଘରେ ପଶିଗଲା। ସିଆଳୀ ବାହାରପଟୁ କବାଟ ବନ୍ଦ କରିଦେଲା।

ତାପରେ ଭାଲୁଆଟି ସିଆଳୀକୁ ଲକ୍ଷ୍ୟ କରି କହିଲା—"ଶୀଘ୍ର ପଳାଅ।"



# ପ୍ରତାରଣା ପ୍ରତାରଣାକୁ ହିଁ ସୃଷ୍ଟି କରେ

( ଥାରୁ ଲୋକ କଥା )

ଓଟ ଓ ଭାଲୁଆ। ଦୁହେଁ ବନ୍ଧୁ। ଦୁହିଁଙ୍କର ସମ୍ପର୍କ ଘନିଷ୍ଠ। ମିତ ବସିଥାନ୍ତି। ଦିନେ ଭାଲୁଆଟି ଓଟକୁ କହିଲା—"ମିତ! ଚାଲ, ଫୁଟି ଖାଇଯିବା।"

ଫୁଟି କଥା ଶୁଣି ଓଟ ଉଚ୍ଛନ୍ନ। ପାଟିରୁ ତାର ଲାଳ ବୋହିଲାଣି। ସେ ପଚାରିଲା—"ମିତ! ଫୁଟି ଖାଇବାକୁ କୁଆଡ଼େ ଯିବା?"

ଭାଲୁଆ ଉତ୍ତର ଦେଲା—"ନଈ ଆରପଟେ ଫୁଟି କିଆରି। ସେଇଠିକୁ ଯିବା।"

ଉଭୟଙ୍କ ମନ ଭାରି ଖୁସି। ସେମାନେ ନଈ ଆଡକୁ ଚାଲିଲେ। ନଈଟି ବେଶ୍ ଗଭୀର। ପାଣି ବି ବହୁତ। ଭାଲୁଆ ତ ପାଣିରେ ଯାଇ ପାରିବ ନାହିଁ। ତେଣୁ ଓଟ ତାକୁ ପିଠିରେ ବସାଇ ନଈପାର କରାଇଦେଲା।

ଆରପଟେ ଫୁଟିକିଆଗଛ ପାଖରେ ସେମାନେ ପହଞ୍ଚିଲେ । ଦେଖିଲେ କିଆଗଛଟି ପାଚିଲା ଫୁଟିରେ ପୂର୍ଣ୍ଣ । ତାଙ୍କର ଆନନ୍ଦ କହିଲେ ନସରେ ! ଚାରିଆଡ଼କୁ ସେମାନେ ଚାହିଁଲେ । କୋଉଠି ଜଗୁଆଳକୁ ଦେଖିଲେ ନାହିଁ । ଏଥର ତାଙ୍କର ଛାତି କୁଣ୍ଢେ ମୋଟ । ନିର୍ଭୟରେ କିଆଗଛରେ ପଶି ଫୁଟି ଖାଇଲେ ।

ବିଲୁଆ ତ ବଡ଼ ଚତୁର । ସେ ଫୁଟିଟିକୁ ଭାଙ୍ଗି ଖଣ୍ଡ ଖଣ୍ଡ କରିଦେଲା । ଖଣ୍ଡଗୁଡ଼ାକ ଖାଇବାଟା ଖୁବ୍ ସୁବିଧା । ଶୀଘ୍ର ଶୀଘ୍ର ତାକୁ ସେ ଖାଇଦେଲା । ତା ପେଟଟି ବି ଛୋଟ । ଅଳ୍ପ ସମୟ ଭିତରେ ତା ପେଟ ପୂରିଗଲା ।

ଓଟର ବେକଟି ତ ବେଶ୍ ଲମ୍ବା । ଫୁଟିଟିଏ ତଳୁ ଉଠାଇ ପାଟିକୁ ନେବାକୁ ତାକୁ ସମୟ ଲାଗେ । ଗୋଟା ଫୁଟିଟିଏ ପାଟିରେ ଭର୍ତ୍ତି କରି ଚୋବେଇ ଖାଇବା ସମୟ ସାପେକ୍ଷ । ତେଣୁ ସେ ଶୀଘ୍ର ଖାଇପାରିଲା ନାହିଁ । ତା ଛଡ଼ା ତା ପେଟଟା ବି ବହୁତ ବଡ଼ । ପେଟ ପୂରିବାକୁ ଡେରି ହେବ । ଯାହାହେଉ, ଓଟଟି ଆସ୍ତେ ଆସ୍ତେ ଫୁଟି ଖାଉଥାଏ ।

ବିଲୁଆର ଯେମିତି ପେଟ ପୂରିଯାଇଛି, ସେ କହିଲା—"ମିତ ! ମୋ ମନ ଭାରି ଖୁସି । ଟିକିଏ ଗୀତ ବୋଲିବି ।"

ତା କଥା ଶୁଣି ଓଟ ମନରେ ଭୟ । ସେ ଭାବିଲେ, ଲୋକେ ଆସିଯିବେ । ସେ ଆଉ ଖାଇପାରିବ ନାହିଁ । ତେଣୁ କାକୁତି ହୋଇ ସେ ଅନୁରୋଧ କଲା—"ଏଇନେ ସେମିତି କର ନାହିଁ ଭାଇ ! ମୁଁ ଆଗ ମୋ ଭୋକ ମାରିସାରେ । ତାପରେ ତୁ ମନଇଚ୍ଛା ତୋର ଗୀତ ଗାଇବୁ ।"

ବିଲୁଆ କି ଶୁଣିବା ଜନ୍ତୁ ! ସେ ବଡ଼ ପାଟିରେ ବୋବାଇଲା ।

ଜଗୁଆଳଟି ବିଲୁଆର ହୁକେ ହୋ ଶୁଣି କ୍ଷେତକୁ ଧାଇଁଲା । ଜଗୁଆଳକୁ ଦେଖି ବିଲୁଆ ଫୁ । ଜଗୁଆଳ ଆସି କ୍ଷେତରେ ଗଲା । ଦେଖିଲା—ଓଟଟି ତାର ଫୁଟି ଖାଉଛି । ସେ ରାଗରେ ନିଆଁ । ଓଟକୁ ମନଇଚ୍ଛା ଧକ୍କ୍ ପିଟିଲା । ଓଟ ବିଚରା ମାଡ ଖାଇ ଖାଇ ଲେଟେଇଁ ଅଧା ହେଲା ।

ସନ୍ଧ୍ୟା ହେଲା । ଦୁଇ ବନ୍ଧୁଙ୍କର ଏଥରକୁ ଫେରିବାର କଥା । ନଈକୂଳରେ ଦୁହିଁଙ୍କର ଭେଟ ହେଲା । ଓଟର ଦେହ ସାରା ଦରଜ । ତଥାପି ସେ ବିଲୁଆକୁ କିଛି କହିଲା ନାହିଁ । ତା ନିଜ କଥା ସେ ମନରେ ରଖିଥାଏ । ବରଂ ବିଲୁଆଟିକୁ ପିଠିରେ ବସାଇ ନଈ ଭିତରେ ପଶିଲା ।

ମଝି ନଈ । ସେଇଠି ଓଟ ଅଟକିଗଲା । ବିଲୁଆ ପଚାରିଲା "ମିତ, ଠିଆ ହେଲୁ କାହିଁକି ?"

ଓଟଟି କହିଲା—"ମାଡ ଖାଇ ଖାଇ ଦେହଟାସାରା ଦରଜ । ଗଡ଼ିଗଲେ, ଦରଜ ଛାଡ଼ିଯିବ । ତେଣୁ ପାଣିରେ ଗଡ଼ିବି ବୋଲି ଭାବୁଛି ।"

ବିଲୁଆ ଏ କଥା ଶୁଣି ଛାନିଆ । ଅନୁନୟ ହୋଇ କହିଲା 'ମିତ ! ଟିକେ ସମ୍ଭାଳି ଯା । କୂଳ ପାଖ ହୋଇ ଆସିଲେ ମନଇଚ୍ଛା ଗଡ଼ିବୁ ।"

ଓଟ ମନରେ ତ ବହୁତ ରାଗ । ସେ ବିଲୁଆ କଥାକୁ କାନେଇଲା ନାହିଁ । ପାଣିରେ ଗଡ଼ିବାକୁ ଆରମ୍ଭ କଲା ।

ବିଚରା ବିଲୁଆ ! ଓଟପିଠିରୁ ଖସିପଡ଼ିଲା । ତା ଉପରେ ଓଟ ବି ଗଡ଼ିଗଲା । ଅଣନିଶ୍ୱାସି ହୋଇ ପାଣିରେ ବିଲୁଆଟି ମରିଗଲା ।

# ଚତୁର ଛେଳି

( ଆରୁ ଲୋକ କଥା )

ଗୋଟିଏ ଗାଁରେ ଛେଳି ଆଉ ଭଲୁଆ ରହନ୍ତି । ସେମାନେ ସାଙ୍ଗ ।

ଥରେ ଦୁହେଁଯାକ ଆଖୁ ଚାଷ କରିବେ ବୋଲି ସ୍ଥିର କଲେ । ଭଲୁଆ କହିଲା—ଯେତେ ଆଖୁ ହେବ ସେସବୁ ଭଲୁଆର । ଯାହା ଗଜା ପତ୍ର ବାହାରିବ, ସେ ସବୁ ଛେଳି ଖାଇବ । ଉଭୟଙ୍କ ରାଜିରେ ଚୁକ୍ତି ଆରମ୍ଭ ହେଲା ।

କିଛିଦିନ ପରେ ଆଖୁ ଗଛ ବାହାରିଲା । ଛେଳିର ଆନନ୍ଦ ଦେଖେ କିଏ ? ସେ ଭଲୁଆ ପାଖକୁ ଧାଇଁଲା । ତାକୁ କଅଁଳେଇ କହିଲା—"ଭଲୁଆ ଭାଇ, ମୋ ଭାଗ୍ୟତ ଆସିଗଲାଣି । ମୁଁ ତାକୁ ଖାଉଛି ।"

କଥାଟା ଏଥର ଭଲୁଆ ଠିକ୍ ବୁଝିଲାଣି । ମୁହଁ ତାର ଫିକା ପଡ଼ିଗଲା । ସେ କହିଲା—"ଆଗରୁ ତ କଥା ସରିଛି । ଏଣିକ ତୋ ଇଚ୍ଛା ଯାହା ହେଉଛି, ତୁ ତା କର । ମୋତେ ପତ୍ରର ଲୋଭ ନାହିଁ ।"

ଏ କଥା ଶୁଣି ଛେଳି ସିଧା ଆଖୁ କ୍ଷେତକୁ ଗଲା । ସେଠେ ଯାହା ଆଖୁପତ୍ର ଆଉ ଗଜା ବାହାରିଥିଲା, ସେ ସବୁ ଖାଇଦେଲା । ଏଥର କିଆରିଟି ଲଣ୍ଡା । ଆଖୁ ଗଛ ଆଉ ହେଲା ନାହିଁ । ଭଲୁଆ ସବୁ ଦିନ ଆଖୁ କ୍ଷେତକୁ ଯାଏ । ନିରାଶ ହୋଇ ଫେରେ । ଶେଷକୁ ଦିନେ ସେ ଛେଳି ସାଥିରେ କଳି କଲା । ଛେଳି କହିଲା—"ଚୁକ୍ତି ଅନୁସାରେ ସେ କାମ କରିଛି । ତାର ଦୋଷ କଣ ?"

ଏହା ସତ । କିନ୍ତୁ ବଲୁଆ ବୁଦ୍ଧିରେ ହାରି ଯାଉଛି । ମନ ତାର ସନ୍ଦେହ ଯାଉ ନାହିଁ । ସେ ରାଗରେ ଜାଳୁଗାଳୁ ହୁଏ । ତେଣୁ ସେ ଛେଳିକୁ କହିଲା—"ଶୁଣ୍, ତୁ ବୃଦ୍ଧ ଆଉ ଦୁଷ୍ଟ । ମୋତେ ଠକି ଦେଲୁ । ଆଉ ଭବିଷ୍ୟତରେ ମୁଁ ତୋ ସାଥିରେ ମିଶି ଚାଷ କରିବି ନାହିଁ । ସେଇଦିନୁ ସେମାନେ ଅଲଗା । ଆଉ ମିଶନ୍ତି ନାହିଁ ।"

ଏହା ଭିତରେ କିଛିଦିନ ଚାଲିଯାଇଛି । ଦିନେ ବୁଲୁ ବୁଲୁ ଛେଳି ଗୋଟିଏ ହେଟାକୁ ଭେଟିଲା । ସେମାନେ କଥାବାର୍ତ୍ତା ହେଲେ । ହେଟାଟି କହିଲା—"କପାଚାଷ କରିବାକୁ ତାର ଭାରି ଇଚ୍ଛା । ସାଥିଟିଏ ଖୋଜୁଛି" । ଛେଳି ଚାଲାକ । ସେ କହିଲା ଯେ ସେ ଭାଗି ହେବାକୁ ରାଜି । କିନ୍ତୁ ଗୋଟିଏ ସର୍ତ୍ତରେ । ଯାହା ଫଳ ଫଳିବ ସେ ସବୁ ଖାଇବ । କଞ୍ଚା ହେଲେ, ହେଟା ନେବ । ସେଥିରେ ତାର ଲାଭ ନାହିଁ । ହେଟାର ଦୂରଦୃଷ୍ଟି କମ୍ । ସେ କଥାଟା ଠିକ୍ କରି ବୁଝିଲା ନାହିଁ । ରାଜି ହୋଇଗଲା ।

ତାପରେ ଉଭୟେ କପା ଚାଷରେ ଲାଗିଗଲେ । କିଛିଦିନ ପରେ ଗଛ ବଢ଼ି ଫୁଲ ଉଡ଼େଇଲା । ତାପରେ ଫଳ ଧରିଲା । ଛେଳି ହେଟାକୁ ପଚାରିଲା ନାହିଁ । ସବୁ ଫଳତକ ଖାଇଦେଲା ।

ହେଟା ଆସି ଦେଖେ ତ କପା ଗଛରେ ଫଳ ଗୋଟିଏ ହେଲେ ନାହିଁ । ସେ ରାଗିଗଲା । ଛେଳିକୁ ଧମକାଇ କରି ହେଟା କହିଲା—"ତୁ ଚାଲବାଜ କଲୁ । ତୁ ତ ସବୁ ଫଳ ଖାଇଦେଲୁ । ଆଉ ମୁଁ କପା ପାଇବି କେମିତି ?" ଉଭୟଙ୍କର ପାଟି ତୁଣ୍ଡ ହେଲା । ଛେଳିଟି କହିଲା—"ଯାହା କଥା ହୋଇଥିଲା, ସେ ମାନୁଛି । ଏଥର ହେଟାଟି ତାର ଭୁଲ ବୁଝି ସେଠୁ ଚାଲିଗଲା ।"

ଛେଳିଟି ଭାବେ—ବଲୁଆ ଆଉ ହେଟା ଉଭୟେ ତାର ଶତ୍ରୁ । ଦୁହେଁ ମିଳିଯିବେ । ସେ ତ ବଣରେ ଏକାକୀ । ତେଣେ ନା

ଦିନେ ତାକୁ ମାରି ଖାଇଦେବେ । ସେଥିପାଇଁ ସେ ଉପାୟ ଖୋଜେ । ଥଳକୂଳ କିଛି ପାଏ ନାହିଁ । ଦିନେ ସେ ବୁଦ୍ଧି ଟିଏ ପାଞ୍ଚିଲା । ସେଇ ଅନୁସାରେ ଏବେ ସେ ଦୁଇଟି କୁକୁର ପୋଷିଛି । ତାଙ୍କ ସାଥିରେ ତାର ବନ୍ଧୁତ୍ୱ । ଏବେ ଯୁଆଡ଼େ ଯାଏ, ସେମାନେ ତା ସାଥିରେ ।

ସବୁ ବିଲୁଆ ତ ଚଲାକ । ଆମ ବିଲୁଆଟି ତାର ବ୍ୟତିକ୍ରମ ନୁହେଁ । ଛେଳିର ହେଟା ସାଥିରେ କଳି କଥା ବି ସେ ଶୁଣିଛନ୍ତି । ଛେଳିକୁ ପାନେ ଦେବାକୁ ତାର ଇଚ୍ଛା । ସେଥିପାଇଁ ସେ ହେଟା ସାଥିରେ ମସୁଧା କଲା ।

ଦିନେ ବିଲୁଆ ଛେଳି ପାଖରେ ହାଜର । ଛେଳି ତାକୁ ଦେଖି ଆଶ୍ଚର୍ଯ୍ୟ । ବିଲୁଆଟି ଭଦ୍ର ସ୍ୱରରେ ଛେଳିକୁ କହିଲା—"ଆଖୁ କ୍ଷେତ ବିଷୟରେ ତୋର ମୋର କଳି ରହିଗଲା । ସେ ତୁଟିଲା ନାହିଁ । ଚାଲ ଯିବା ପଞ୍ଚାୟତ ମାନିବା । ସେ ଯାହା ନିଷ୍ପତ୍ତି କରି-ଦେବେ ତାକୁ ମାନିନେବା । ଆଉ ଅପଡ଼ ହୋଇ ଲାଭ ନାହିଁ ।"

ଛେଳି ବିଲୁଆକୁ ବିଶ୍ୱାସ କଲା ନାହିଁ । କିନ୍ତୁ ସେତେବେଳକୁ ସେ ଏକା ଥାଏ । ରାଜି ନହେଲେ, ବିଲୁଆ ହଇରାଣ କରିପାରେ । ସେଥିପାଇଁ ସେ ରାଜି ହୋଇଗଲା । ତାପରେ ପଚାରିଲା—"କାହାକୁ ପଞ୍ଚାୟତ ମାନିବା ?"

ବିଲୁଆ କହିଲା—"ହେଟା ଏଠାର ମାମଲତକାର । ତା କଥା ପଶୁମାନେ ମାନନ୍ତି । ଚାଲଯିବା । ତାକୁ ପଞ୍ଚାୟତ ମାନିବା ।"

'ହଉ' ବୋଲି ଉତ୍ତରରେ ଛେଳିଟି କହିଲା ।

ବିଲୁଆ ସାଥି ସାଥି ପଞ୍ଚାୟତର ଦିନ ବାର ସମସ୍ତ ଠିକ୍ କରି ଦେଲା । ଆଉ କହିଲା କେହି କାହାକୁ ଡାକିବେ ନାହିଁ । ସମସ୍ତେ ପଞ୍ଚାୟତ ଜାଗାରେ ପହଞ୍ଚିବେ ।

ଛେଳ ବି ଏଥିରେ ରାଜି ହୋଇଗଲା ।

ପଞ୍ଚାୟତ ସମୟ ଆଗରୁ ଛେଳଟି ବାହାରି ପଡ଼ିଲା । ସାଥିରେ ତାର ପୋଷା କୁକୁର ଦୁଇଟି । ପଞ୍ଚାୟତ ହେବା ଜାଗା ପାଖରେ କୁକୁରମାନଙ୍କୁ କହିଲା—"ଏଇଠି ଲୁଚି କରି ରୁହ । ମୁଁ ଚିତ୍କାର କଲେ ଧାଇଁଯିବ । ମୋତେ ରକ୍ଷା କରିବ ।" କୁକୁରମାନେ ସେଠି ଲୁଚି ଗଲେ । ତାପରେ ସେ ପଞ୍ଚାୟତ ହେବା ଜାଗାକୁ ଗଲା । ସେଠି ଅପେକ୍ଷା କଲା ।

ଠିକ୍ ବେଳାରେ ହେଣ୍ଟା ଓ ଭାଲୁଆ ସାଥି ହୋଇ ଆସିଲେ । ସେମାନେ ଖୁବ୍ ଖୁସି ଥାଆନ୍ତି । ଛେଳକୁ ଦେଖି ଭାଲୁଆ କହିଲା— "ଭଲ କଲୁ, ଆଜ ଆସିଛୁ । ମୁଁ ଭାବୁଥିଲି, ତୁ ଆସିବୁ ନାହିଁ ଆ, ପଞ୍ଚାୟତ ଆରମ୍ଭ କରିଦେବା ।"

ଏତିକି ତା ପାଟିରୁ ସରିନାହିଁ, ହେଣ୍ଟା ଛେଳକୁ ଆକ୍ରମଣ କରିବାକୁ ଧାଇଁ ଆସିଲା । ଛେଳଟି ଚିତ୍କାର କଲା—"ରକ୍ଷାକର, ରକ୍ଷାକର ।"

କୁକୁରମାନେ ଛେଳର ଚିତ୍କାର ଶୁଣି ଧାଇଁଗଲେ । କୁକୁରଙ୍କୁ ଦେଖି ଭାଲୁଆ ଓ ହେଣ୍ଟାଙ୍କର ବୁଦ୍ଧି ବଣା ହୋଇଗଲା । ସେମାନେ ଆଉ ପଳାଇଯାଇ ପାରିଲେ ନାହିଁ । କୁକୁର ଦିହିଁ ତାଙ୍କୁ ମାରି ପକାଇଲେ ।

ଛେଳଟି ମନ ଖୁସିରେ ଘରକୁ ଫେରି ଆସିଲା ।



# ବାଉଳ ଓ ମାଉଳ ପାଏ

( ଥାରୁ ଲୋକ କଥା )

ଏକଦା ।ଉକଟିଏ ଥିଲା । ସେ ଆଖ ପାଖ ଗାଁରେ ଭିକ ମାଗେ । ସେଥିରେ ସେ ଚଳେ । ଏତ ଅଳ୍ପ ଘର । ଘନ ଘନ ଭିକ ନ ମାଗିଲେ, ଚଳିହେବ ନାହିଁ । ସେଥିପାଇଁ ବାରମ୍ବାର ସେ ଭିକ ମାଗେ । ସେତ ଏଠାକାର ଲୋକ । ସମସ୍ତଙ୍କର ଜଣାଶୁଣା । ତେଣୁ ସମସ୍ତଙ୍କର ତା ପ୍ରତି ଦୟା ଅଛି । ସେଥିପାଇଁ ଭିକ ଦିଅନ୍ତି ସତ । କିନ୍ତୁ; ସେମାନେ ସମସ୍ତେ ଅତି ଗରିବ । ଭିକ ଦେଲେ ତାଙ୍କୁ ବାଧେ । ତେଣୁ ସମସ୍ତେ ତା ଉପରେ ଅସନ୍ତୁଷ୍ଟ । ବିରକ୍ତ । କେବେ କେବେ ଖୁଣ୍ଟା ବି ଦିଅନ୍ତି ।

ବାଉଳ ଏସବୁ ଜାଣି ନ ଜାଣିଲା ପରି ରହେ । ଯେତେ ହେଲେତ, ରକ୍ତ ମାଂସ ଶରୀର । ପରର ଖୁଣ୍ଟା କଥା କେଉଁଠି ସହି ହେଉଛି । ଦେହରେ କଣ୍ଟା ଗଳିଗଲା ଭଳି ଲାଗେ । ସେ ସ୍ଥିର କଲା, ଗୋଟାଏ କିଛି କାମ ଯୋଗାଡ଼ କରିବ । ସେଥିପାଇଁ ବାହାରକୁ ଯିବାକୁ ତାର ଇଚ୍ଛା । ବାଟକୁ କିଛି ଖାଦ୍ୟ ଦରକାର । ତେଣୁ ସ୍ତ୍ରୀକୁ ରୁଟିପଠ ରୁଟି କରିବାକୁ କହିଦେଲା ।

କଥାମାନ ସ୍ତ୍ରୀଟି ତାର ରୁଟି କଲା । ସେତକ ଧରି ସେ ବାହାରି ପଡ଼ିଲା ସକାଳୁ ସକାଳୁ । ଧନ୍ଦା ଖୋଜ । ପାଖ ଗାଁ ଗୁଡ଼ ସେ ଦୂରକୁ କେବେ ଯାଇନ । ତେଣୁ ବାଟ ବି ସେ ଜାଣେ ନାହିଁ । ଲକ୍ଷ୍ୟ ହୀନ ସେ । କାହାକୁ କିଛି ନ ପଚାରି ସେ ଚାଲିଥାଏ । ସେ ଗୋଟିଏ ନଗୁଟିଆ ଜାଗାରେ ପହଞ୍ଚି ଯାଇଥିଲା । ପାଖରେ କୂଅଟି । କାଉ କୋଇଲିକ ସେଠି କେହି ନାହାନ୍ତି । ସେତେବେଳକୁ ଦ୍ୱିପ୍ରହର । ତାକୁ ବି ଖୁବ ଭୋକ ହେଲାଣି । ସେଇଠି ବସି ସେ ପଣ୍ଟିଲି

ଖୋଲିଲା । ଆଗରେ ତାର ଗୋଟିଏ ରୁଟି । ତାର ପାଖେଯୁ । ଖାଇଦେଲେ ସରିଯିବ । ତେଣୁ କ'ଣ କରିବ ସେ ଭାବିପାରିଲା ନାହିଁ । ସେଠି ତ କେହି ନଥିଲେ । ତେଣୁ ସେ ବଡ଼ ପାଟିରେ ତା ମନକୁ ମନ පଚାରିଲେ—ଗୋଟିଏ ଖାଇବ ନାଁ ଦୁଇଟା ଖାଇବ । ନାଁ ତିନୋଟି ଖାଇବ ନାଁ ଚାରିଟା ଯାକ ଖାଇବ ।

ଭାଗ୍ୟକୁ ସେଇ କୂଅରେ ଗୋଟିଏ ଦେବତା ଥିଲେ । ସେମାନେ ବାଳକର କଥା ଶୁଣି ଭାବିଲେ, ବାଳକ ସମ୍ଭବ ତାଙ୍କୁ ଖାଇବା କଥା କହୁଛି । ସେଥିପାଇଁ ସେମାନେ ଘାବରା । ଭୟରେ ଥରହର । ତାଙ୍କ ଭିତରେ ଆଲୋଚନା ହେଲା—ବାଳକକୁ କିଛି ଜିନିଷ ଦେଲେ ବାଳକଟି ଖୁସିରେ ଚାଲିଯିବ । ସେମାନେ ରକ୍ଷା ପାଇଯିବେ ।

ସେମାନେ ବାଳକକୁ କହିଲେ—"ଆମର ତୋ ପ୍ରତି ଶ୍ରଦ୍ଧା ବଢ଼ୁଛି । କିଛି ଜିନିଷ ଦେଲେ, ତୁ ଏଠୁ ଚାଲିଯିବୁ ତ ?"

ବାଳକଟି ଏକଥା ଶୁଣି କୃତାର୍ଥ କୃତାର୍ଥ । ସେ ହଁ ମାରିଲା ।

ଦେବତାମାନେ ବାଳକକୁ ପାତ୍ରଟିଏ ଦେଇ କହିଲେ—ତୋର ଖାଇବାର ଦରକାର ପଡ଼ିଲେ, ପାତ୍ରଟିକୁ ଭଲ କରି ମାଜି ଧୋଇଦେବୁ । ପାତ୍ରଟି ଯେମିତି ଚକ୍ ଚକ୍ ମାରିବ । ପରିଷ୍କାର ଚୂଲିରେ ପାତ୍ରଟି ବସାଇ କହିବୁ—'ହେ ପାତ୍ର, ତୁ ଯଦି ସତ୍ୟ,ସାତ ପ୍ରକାର ସୁଆଦିଆ ଖାଦ୍ୟ ପ୍ରସ୍ତୁତ କର ।' ପାତ୍ରଟିକୁ ଅନାଇ ରହିବୁ । ଦେଖିବୁ ଯାହା ସବୁ ଖାଦ୍ୟ ମନେ ମନେ ମନାସିଛୁ, ସେସବୁ ଅଛି ।"

ଏକଥା ଶୁଣି ବାଳକ ଭାରି ଖୁସି । ପାତ୍ରଟି ଧରି ସେ ଘରକୁ ବାହୁଡ଼ିଲା । ଟିକିଏ ବି ଡେରି ସେଠି କଲା ନାହିଁ । ଆସୁ ଆସୁ ବାଟରେ ରାତି ହୋଇଗଲା । ପାଖରେ ଗାଁଟିଏ । ସେଇଠି ରାତିରେ ରହିବ ବୋଲି ସ୍ଥିର କଲା ।

ଗାଁରେ ଜଣକ ଘରେ ପହଞ୍ଚିଲା । ରାତିଟି କଟାଇବା ପାଇଁ ତାର ଅନୁରୋଧ । ଘରର ମାଲିକଟି ଦୟାଳୁ । ସେ ତାର ବିଶ୍ରାମ ପାଇଁ ତାଙ୍କ ଘର ଛାଡ଼ିଦେଲେ । ରାତିରେ କ'ଣ ଖାଇବ ବୋଲି ପଚାରିଲେ ।

ବାଳକଟିର ମନ ଯାଇ ପାତ୍ରରେ । ପାତ୍ରକୁ ପରୀକ୍ଷା କରିବା ପାଇଁ ସେ ବ୍ୟସ୍ତ । ତେଣୁ ମାଲିକଙ୍କୁ କହିଲା—"ମୋ ପାଇଁ ବ୍ୟସ୍ତ ହୁଅନ୍ତୁ ନାହିଁ । ଖାଲି ମୋତେ ଚୂଲିଟିଏ ଦେଖାଇ ଦିଅନ୍ତୁ । ଯଦି ପାରନ୍ତି, ସେଇଟିକୁ ପରିଷ୍କାର କରିଦେବେ ।"

ଘରର ମାଲିକ ତା ସ୍ତ୍ରୀଙ୍କୁ ଚୂଲି ପରିଷ୍କାର କରି ଦେବାକୁ କହିଦେଲା । ସ୍ତ୍ରୀଟି ଭାରି ଧୂର୍ତ୍ତ । ପରିଷ୍କାର ଚୂଲିରେ ଖାଦ୍ୟ କିପରି ପ୍ରସ୍ତୁତ ହେବ, ଏକଥା ତାକୁ ଆଶ୍ଚର୍ଯ୍ୟ ଲାଗିଲା । ସେ ସ୍ୱାମୀ କଥା ମାନି ଚୂଲି ପରିଷ୍କାର କଲା ସତ, ବାଟୋଇଟି କିପରି ରନ୍ଧା ଖାଇବ, ତା ଦେଖିବାକୁ ତା'ର ଆଗ୍ରହ ବଢ଼ୁଥିଲା । ସେ ବାଟୋଇକୁ ଗୋଡ଼େ ଗୋଡ଼େ ଜଗିଲା ।

ବାଟୋଇଟି ପାତ୍ର ବାହାର କରି ମାଜିଲା । ତାପରେ ତାକୁ ନେଇ ଚୂଲିରେ ବସାଇ କହିଲା—"ହେ ପାତ୍ର ଯଦି ତୁ ସତ୍ୟ, ମୋ ପାଇଁ ସୁଆଦିଆ ଖାଦ୍ୟ ପ୍ରସ୍ତୁତ କର ।" ସତକୁ ସତ ରନ୍ଧା ସରିଗଲା । ସାତ ପ୍ରକାରର ବଢ଼ିଆ ବଢ଼ିଆ ତରକାରି ଆଉ ଖେଚୁଡ଼ି । ବାଳକଟି ତାକୁ ଖାଇ ଆନନ୍ଦରେ ଶୋଇଗଲା ।

ଘରର ମାଲିକାଣୀ ଏସବୁ ତ ଦେଖିଥିଲା । ବାଳକକୁ ଯେମିତି ନିଦ ହୋଇଛି, ତା ପାତ୍ରଟି ନେଇଗଲା । ତା ବଦଳରେ କିନ୍ତୁ ସେଇମିତି ପାତ୍ରଟିଏ ଥୋଇଦେଲା ।

ପରଦିନ ସକାଳ । ବାରିକଟି ଘରର ମାଲିକ ଓ ତା ସ୍ତ୍ରୀଠାରୁ ବିଦାୟ ନେଲା । ପାତ୍ରଟିକୁ ଧରି ଘରମୁହାଁ ଚାଲିଲା ।

ଘରେ ପହଞ୍ଚି ସ୍ତ୍ରୀକୁ ଡାକ ପକାଇଲା । ସ୍ତ୍ରୀଟି ଆସିବାରୁ ସେ ଗଦ ଗଦ ହୋଇ କହିଲା—"ଆଲୋ ହେ, ଭଗବାନ ଆମକୁ ସାହା । ପାତ୍ରଟିଏ ଦେଇଛନ୍ତି । ଯେତେ ଖାଇଲେ ବି ସରିବ ନାହିଁ । ଆମ ଦୁଃଖ ଏଥର ଗଲା । ତୁ ତ ଖାଇ ନଥିବୁ । ମୁଁ ବି ସକାଳୁ କିଛି ଖାଇ ନାହିଁ । ଯା ଏ ପାତ୍ରକୁ ନେଇଯା । ଭଲକରି ମାଜ । ଯେମିତି ଚକ ଚକ ହେବ । ତଳକୁ ପରିଷ୍କାର କର । ତା ପରେ ପାତ୍ରକୁ ସେଥିରେ ବସାଇବୁ । କହିବୁ—ହେ ପାତ୍ର, ତୁ ଯଦି ସତ୍ୟ, ମୋ ପାଇଁ ସୁଆଦିଆ ଖାଦ୍ୟ ପ୍ରସ୍ତୁତ କର । ତାପରେ ପାତ୍ରକୁ ଅନାଇବୁ । ଯେଉଁ ଖାଦ୍ୟ ସବୁ ମନାସିବୁ, ସେମିତି ଖାଦ୍ୟ ପାତ୍ରରେ ରହିବ ।"

ବାରିକର ସ୍ତ୍ରୀ ଏକଥା ଶୁଣି ଖୁସି । ବାରିକ ଯେମିତି କହିଥିଲା, ସେମିତି କଲା । କିନ୍ତୁ ଥରେ ନୁହେଁ, ବହୁବାର ସେ ପାତ୍ରକୁ ବାରିକ କହିଥିବା କଥା କହିଲା କିନ୍ତୁ ପାତ୍ରଟି ଶୂନ୍ୟ ।

ସେ ଆସି ସ୍ୱାମୀକୁ ତାର ଏକଥା କହିଲା । ବାରିକ ବି ଯାଇ ପାତ୍ରକୁ ମାଜିଲା, ତଳ ପରିଷ୍କାର କଲା । ବାରମ୍ବାର ଖାଦ୍ୟ ପ୍ରସ୍ତୁତ କରିବାକୁ ପାତ୍ରକୁ କହିଲା, କିନ୍ତୁ ପାତ୍ରଟିର ପରିବର୍ତ୍ତନ କିଛି ହେଲା ନାହିଁ ।

ବାରିକଟି ମନରେ ଅଶେଷ ଦୁଃଖ । ବଡ଼ବଡ଼ି ଦୀର୍ଘନିଶ୍ୱାସ ପକାଇ ମୁଣ୍ଡରେ ହାତଦେଇ ବସିଲା । ଭାବିଲା—ଭାଗ୍ୟରେ ନଥିଲେ ସୁନା ବି ପିତଳ ହୋଇଯାଏ ।

# ପୃଥିବୀର ଲୋକକଥା

୧। ଭିଏତ୍‌ନାମ
୨। ଲାଦାଖ (୧)
୩। ଲାଦାଖ (୨)
୪। ପଞ୍ଜାବ (୧)
୫। ପଞ୍ଜାବ (୨)
୬। ପଞ୍ଜାବ (୩)
୭। ପଞ୍ଜାବ (୪)
୮। ପଞ୍ଜାବ (୫)
୯। ପଞ୍ଜାବ (୬)
୧୦। ପଞ୍ଜାବ (୭)
୧୧। ଉତ୍ତର ପ୍ରଦେଶ (୧)
୧୨। ଉତ୍ତର ପ୍ରଦେଶ (୨)
୧୩। ଉତ୍ତର ପ୍ରଦେଶ (୩)
୧୪। ଉତ୍ତର ପ୍ରଦେଶ (୪)
୧୫। ମଧ୍ୟପ୍ରଦେଶ (୧)
୧୬। ଆସାମ (୧)
୧୭। କାଶ୍ମୀର (୧)
୧୮। କାଶ୍ମୀର (୨)
୧୯। କାଶ୍ମୀର (୩)
୨୦। ଇହୁଦୀ (୧)
୨୧। ହିମାଚଳ ପ୍ରଦେଶ (୧)
୨୨। ଆସାମ (୨)
୨୩। ଋଷିଆ (୧)
୨୪। ସାନ୍ତାଳ (୧)
୨୫। ଇଟାଲୀ (୧)
୨୬। ମଧ୍ୟପ୍ରଦେଶ (୨)
୨୭। ଇହୁଦୀ (୨)
୨୮। ଶ୍ରୀଲଙ୍କା (୧)
୨୯। ଶ୍ରୀଲଙ୍କା (୨)
୩୦। ସାନ୍ତାଳ (୨)
୩୧। ସାନ୍ତାଳ (୩)
୩୨। ସାନ୍ତାଳ (୪)
୩୩। ସାନ୍ତାଳ (୫)
୩୪। ସାନ୍ତାଳ (୬)
୩୫। ସାନ୍ତାଳ (୭)
୩୬। ସାନ୍ତାଳ (୮)
୩୭। ସାନ୍ତାଳ (୯)
୩୮। ସାନ୍ତାଳ (୧୦)
୩୯। ସାନ୍ତାଳ (୧୧)
୪୦। ସାନ୍ତାଳ (୧୨)
୪୧। ସାନ୍ତାଳ (୧୩)
୪୨। ସାନ୍ତାଳ (୧୪)
୪୩। ନେପାଳ (୧)
୪୪। ଇହୁଦୀ (୩)
୪୫। ଇହୁଦୀ (୪)
୪୬। ନେପାଳ (୨)
୪୭। ତିବ୍ବତ (୧)
୪୮। ଚୀନ୍ (୧)
୪୯। ହରିଆନା (୧
୫୦। ଜାପାନ (୧

**ନୀଳକଣ୍ଠେଶ୍ୱର ଶିକ୍ଷା ପ୍ରକଳ୍ପ**
**ଗୋ ଦିଘାଳ, ଜି. - ପୁରୀ**